

ଭାରତୀୟ ଜୀବନ-ପରିକ୍ରମାରେ

ଯାହାଙ୍କର ଆତ୍ମା ନୂତନ ଅନ୍ୱେଷଣର ସ୍ୱର ତୋଳୁଥିଲା

ସେହି ମହାନ ଦେଶପ୍ରେମୀ, ଜନନାୟକ,

ଭାରତର ପୂର୍ବତନ ରାଷ୍ଟ୍ରପତି

## ସ୍ୱର୍ଗତଃ ଫକିରୁଦ୍ଦୀନ ଅଲ୍ଲି ଅହମ୍ମଦଙ୍କୁ

ଉତ୍କଳ ସାଂସ୍କୃତିକ ପରିଷଦ

ତାଙ୍କର ଆତ୍ମାର ସଦ୍‌ଗତି ପାଇଁ

ବିନୀତ ପ୍ରାର୍ଥନା କରେ ।

Digitized by PPRACHIN, SOA

୧୯୭୭



୧୯୭୭—ଚଳନ୍ତି ବର୍ଷର ପରିଷଦ

## ଉପଦେଷ୍ଟାଗଣ

ଶ୍ରୀ ନଳିନୀ ରଂଜନ ମହାନ୍ତି
ଶ୍ରୀ ବଳକିଶୋର ମହାପାତ୍ର
ଶ୍ରୀ ଦୁର୍ଗାଚରଣ ଦାସ
ଶ୍ରୀ ପ୍ରଶାନ୍ତ କୁମାର ରଥ
ଶ୍ରୀ କୃଷ୍ଣଚନ୍ଦ୍ର ରଥ ।

## କର୍ମକର୍ତ୍ତାମାନେ

ସଭାପତି — ଶ୍ରୀ ସୁବ୍ରତ କୁମାର ଦାସ
ଉପ ସଭାପତି — ଶ୍ରୀ ମନୋଜ କୁମାର ସେନାପତି
ସମ୍ପାଦକ — ଶ୍ରୀ ନରେନ୍ଦ୍ର କୁମାର ପଣ୍ଡା
ଯୁଗ୍ମ ସମ୍ପାଦକ — ଶ୍ରୀ ପ୍ରଭାତ ଚନ୍ଦ୍ର ପାଢ଼ୀ
କୋଷାଧ୍ୟକ୍ଷ — ଶ୍ରୀ ହେମନ୍ତ କୁମାର ଗଉଡ଼
ପାଠାଗାର ପରିଚାଳକ —
ଶ୍ରୀ ରଘୁନାଥ ଓଝା
ଶ୍ରୀ ଗୁରୁଚରଣ ପଟ୍ଟନାୟକ

ସମ୍ପାଦନାର ବିନ୍ଧାଣୀ:

ଅଧ୍ୟାପକ ରମେଶ ଦାସ
ଶ୍ରୀ କୃଷ୍ଣଚନ୍ଦ୍ର ରଥ
ଶ୍ରୀ ନଳିନୀରଂଜନ ମିଶ୍ର
ଶ୍ରୀ ରବୀନ୍ଦ୍ର କୁମାର ପଣ୍ଡା

Digitized by PPRACHIN, SOA

## କାର୍ଯ୍ୟକାରୀ କମିଟି ସଦସ୍ୟବୃନ୍ଦ

ଶ୍ରୀ କାଳନ୍ଦୀ ଚରଣ ସାମଲ

ଶ୍ରୀ ରବି ପଟ୍ଟନାୟକ
ଶ୍ରୀ ଲକ୍ଷ୍ମୀକାନ୍ତ ମହାପାତ୍ର
ଶ୍ରୀ ପ୍ରହ୍ଲାଦ ମଲ୍ଲିକ
ଶ୍ରୀ କୁଞ୍ଜବିହାରୀ ପାଠୀ
ଶ୍ରୀ ବୈଷ୍ଣବ ଚରଣ ବେହୁରିଆ
ଶ୍ରୀ ବିଶ୍ୱନାଥ ପ୍ରଧାନ
ଶ୍ରୀ ବେଣୁଧର ପଣ୍ଡା

## ବିଭାଗୀୟ ପ୍ରତିନିଧି ସମୂହ

ଶ୍ରୀ ରାମଚନ୍ଦ୍ର ମଲ୍ଲ
ଶ୍ରୀ ରବୀନ୍ଦ୍ର କୁମାର ପଣ୍ଡା
ଶ୍ରୀ ଭୀମସେନ ଦାସ
ଶ୍ରୀ ଉପେନ୍ଦ୍ରନାଥ ସାହୁ
ଶ୍ରୀ ସୁଦର୍ଶନ ପ୍ରଧାନ
ଶ୍ରୀ ନଟବର ଜେନା
ଶ୍ରୀ ନଳିନୀ ରଂଜନ ମିଶ୍ର
ଶ୍ରୀ ଗୌରାଙ୍ଗ ଚରଣ ନାୟକ
ଶ୍ରୀ ଅକ୍ରୁର ଚରଣ ବେହୁରିଆ
ଶ୍ରୀ ବଂଶୀଧର ଦାସ
ଶ୍ରୀ ସୁରମଳ ଜେନା
ଶ୍ରୀ ବିଶ୍ୱଜିତ୍ ପଟ୍ଟନାୟକ
ଶ୍ରୀ ମୋହନ ଜେନା
ଶ୍ରୀ ହରିହର ତ୍ରିପାଠୀ
ଶ୍ରୀ ତାରିଣୀ ପ୍ରଧାନ
ଶ୍ରୀ ପ୍ରମୋଦ ଚନ୍ଦ୍ର ସାମନ୍ତରାୟ
ଶ୍ରୀ ବିଜୟ ପାଲ
ଶ୍ରୀ ପ୍ରଦୀପ୍ତ କୁମାର ଦାସ
ଶ୍ରୀ ଜୟ ନାରାୟଣ ପଣ୍ଡା
ଶ୍ରୀ ବିଜୟ କୁମାର ହୋତା

## ବିଭାଗ ପରୀକ୍ଷଣକାରୀ

ସାହିତ୍ୟ— ଶ୍ରୀ ରବୀନ୍ଦ୍ର କୁମାର ପଣ୍ଡା
ଶ୍ରୀ କୃଷ୍ଣଚନ୍ଦ୍ର ରଥ
ଶ୍ରୀ ନଳିନୀ ରଞ୍ଜନ ମିଶ୍ର
ଆ: କ୍ରୀଡା— ଶ୍ରୀ ଜୟନ ରାୟଣ ପଣ୍ଡା
ଶ୍ରୀ ପ୍ରମୋଦଚନ୍ଦ୍ର ସାମନ୍ତରାୟ
ଶ୍ରୀ ବୈଷ୍ଣବ ବେହୁରିଆ
ବାହ୍ୟ କ୍ରୀଡା— ଶ୍ରୀ କାଳନ୍ଦୀ ଚରଣ ସାମଲ
ଶ୍ରୀ ବେଣୁଧର ପଣ୍ଡା
ଶ୍ରୀ ଗୋବିନ୍ଦ ପଣ୍ଡା
ଶ୍ରୀ ବିଶ୍ୱଜିତ୍ ପଟ୍ଟନାୟକ
ଶ୍ରୀ ସୁଦର୍ଶନ ବେହୁରିଆ

## ନାଟକ

ଶ୍ରୀ ସରୋଜ କୁମାର ସେନାପତି
ଶ୍ରୀ ନରେନ୍ଦ୍ର କୁମାର ପଣ୍ଡା
ଶ୍ରୀ ସୁଦର୍ଶନ ପ୍ରଧାନ
ଶ୍ରୀ ବିଶ୍ୱନାଥ ପ୍ରଧାନ
ଶ୍ରୀ ପ୍ରତାପ ଚନ୍ଦ୍ର ପାତ୍ର

## ପାଠାଗାର ପରିଚାଳନା

ଶ୍ରୀ ନଳିନୀ ରଞ୍ଜନ ମିଶ୍ର

## ଅର୍ଥ କମିଟି

ଶ୍ରୀ ରାମଚନ୍ଦ୍ର ମଲ୍ଲ
ଶ୍ରୀ ଦକ୍ଷକୁମାର ଦାସ
ଶ୍ରୀ ନଟବର ଜେନା

## ପ୍ରୌଢ ଶିକ୍ଷା

ଶ୍ରୀ ପ୍ରତାପଚନ୍ଦ୍ର ପାତ୍ର,
ଶ୍ରୀ ପ୍ରହ୍ଲାଦ ମଲ୍ଲିକ
ଶ୍ରୀ ମାର୍କଣ୍ଡ ମିଶ୍ର
ଶ୍ରୀ ଲକ୍ଷ୍ମୀକାନ୍ତ ମହାପାତ୍ର

Digitized by PPRACHIN, SOA

Press Secretary to the President
Rastrapati Bhavan
New Delhi-110004
India.

सत्यमेव जयते

No F.2-M/77

January 27, 1977

Dear Shri Das,

Please refer to your letter of the 15th January, 1977. The President sends his best wishes for the success of the Souvenir "Smaranika" which the Utkal Sanskrutika Parishad, Sunabeda, will bring out on the occasion of Utkal Dibas.

Yours sincerely,
Sd/- A. M. Abdul Hamid

Shri S. K. Das,
President,
Utkal Sanskrutika Parishad,
Sunabeda.
Pin Code No. 763002

Digitized by PPRACHIN, SOA



VICE-PRESIDENT
INDIA
NEW DELHI

January 20, 1977

*I understand that the Utkal Sanskrutika Parishad, Sunabeda, will bring out the 5th issue of its Souvenir "Smaranika" on the 1st April, 1977. I am happy to note that this Souvenir will be published in memory of Utkalmani Pandit Gopabandhu Das. I send my best wishes for the success of the publication.*

**Sd/- B. D. Jatti**

Digitized by PPRACHIN, SOA




MINISTER OF STATE
MINISTRY OF DEFENCE
GOVERNMENT OF INDIA
New Delhi Jan, 25, 1977.

## MESSAGE

*I am glad to know that the Utkal Sanskrutika Parishad, Sunabeda, is bringing out Souvenir 'Smaranika' on 1st April 1977 on the occasion of Utkal Dibas, the State Formation Day of Orissa, and this Souvenir is being dedicated to the immortal and illustrious son of Orissa, Utkalmani Pandit Gopabandhu Das.*

*I wish the Souvenir all success.*

*Sd/- J. B. Patnaik*

---

## HINDUSTAN AERONAUTICS LTD

KORAPUT DIVISION
P. O. Sunabeda
Pin Code-76 020
(DIST. KORAPUT, ORISSA)
Telegrams: SUPERSONIC
Telex: Visakhapatnam049-248

10th February'77

The Secretary,
Utkal Sanskrutika Parisad,
SUNABEDA-2

Sir,

The Utkal Sanskrutika Parisad has been doing an excellent work in the township to project the cultural image of the State.

I am glad to note that you are bringing out the fifth issue of "SMARANIKA" on the occaison of the 41st anniversary of the formation of Orissa as a separate State. Also I am very happy to note that you are dedicating this issue of Smaranika to the immortal soul and illustrious son of Orissa Utkalmani Pandit Gopabandhu Das in connection with his Birth Centenary.

I wish the Utkal Sanskrutika Parisad and all its members further progress in their endeavour.

Thanking you,

Yours faithfully,
*Sd/- G. Narasimhan*
General Manager

Digitized by PPRACHIN, SOA

# UTKAL SANSKRUTIKA PARISHAD, SUNABEDA-2

## *Achievements of our glorious Drama Festival-1976*

1. Best Drama .... "MRUGAYA" by HALEWF, Sunab da-2.
2. Second best Drama .... 'KACHAGHARA' by D.A.V. College, Koraput.
3. Best Director .... Dr. M. C. Mishra for 'MU AMBHE O AMBHEMANE' by OTECO, Sunabeda-1.
4. Best Actor ... Mr. Sukanta Mohanty (Muktikanta) in 'TIMIRATRUSHNA' by Jibanchhanda, Koraput.
5. Best Actress ... Kumari Malabika Deo (Tatini) in 'KACHAGHARA' by DAV College, Koraput.
   &
   Kumari Minati Jena (Mukta) in 'MRUGAYA' by HALEWF, Sunabeda-2.
6. Best Commedian .... Mr. Jayanta Kumar Panda (Sadhua) in 'KACHAGHARA' by DAV College, Koraput.
7. Best Supporting Actor ... Birupakhya Mishra (Sarathi) in 'MRUGAYA' by HALEWF, Sunabeda-2
8. Best Stage ... "MU AMBHE O AMBHEMANE" by OTECO, Sunabeda-1.

## SPECIAL AWARDS

1. Sri Uma Prashad Patro (Abani) in MU SAITAN KAHUCHHI by Nowrangpur Cultural Association.
2. Sri Surya Prakash Patnaik (Gajendra Bhusan) in Timira Trushna by Jibanchhanda, Koraput.
3. Sri Maruti Ch. Das (Gunanidhi) in MU SAITAN KAHUCHHI by Nowrangpur Cultural Association.
4. Sri Nrusingh Mohapatro (Atanu) in MU AMBHE O AMBHEMANE by OTECO, Sunabeda1-.

———

Digitized by PPRACHIN, SOA

## ୧୯୭୭ ମସିହା "ଭଞ୍ଜ ଜୟନ୍ତୀ"ର କୃତୀ କଳାକାରଗଣ

| | | ଜୁନିଅର | ସିନିଅର |
|---|---|---|---|
| ଓଡ଼ିଶୀ କଣ୍ଠ ସଙ୍ଗୀତ — | ପ୍ରଥମ- | କୁମାରୀ ସ୍ୱଜଲକ୍ଷ୍ମୀ ପଣ୍ଡା | ଶ୍ରୀ ସୁଦର୍ଶନ ପ୍ରଧାନ |
| | ଦ୍ୱିତୀୟ- | କୁମାରୀ ବିଦ୍ୟୁତପ୍ରଭା ପଟ୍ଟନାୟକ | କୁମାରୀ ଅର୍ଚ୍ଚନା ଦାସ |
| ଛାନ୍ଦ — | ପ୍ରଥମ- | କୁମାରୀ ସାଧନା ଦାସ | କୁମାରୀ ଅର୍ଚ୍ଚନା ଦାସ |
| | ଦ୍ୱିତୀୟ- | କୁମାରୀ ସ୍ୱଜଲକ୍ଷ୍ମୀ ପଣ୍ଡା | କୁମାରୀ ଅମ୍ବୁଜିନୀ ମହାପାତ୍ର |
| ଜଣାଣ — | ପ୍ରଥମ- | କୁମାରୀ ସାଧନା ଦାସ | କୁମାରୀ ସନ୍ଧ୍ୟାରାଣୀ ପଣ୍ଡା |
| | ଦ୍ୱିତୀୟ- | କୁମାରୀ ବିଦ୍ୟୁତପ୍ରଭା ପଟ୍ଟନାୟକ | କୁମାରୀ ଅର୍ଚ୍ଚନା ଦାସ |
| ନୃତ୍ୟ — | ପ୍ରଥମ- | କୁମାରୀ ମମତା ମହାପାତ୍ର | ମିସ୍ ~~ଶେଫାଳିକା~~ |
| | ଦ୍ୱିତୀୟ- | ଶରତ ମହାରଣା | କୁମାରୀ ମମତା ନାୟକ |

## ୧୯୭୭ ମସିହା ଆନ୍ତଃ କ୍ରୀଡ଼ା ପ୍ରତିଯୋଗିତାର ବିଜୟୀ

| | | |
|---|---|---|
| ଚେସ୍ — | ୱିନର- | ଶ୍ରୀ ତ୍ରିନାଥ ରଥ |
| | ରନର୍ସ- | ଶ୍ରୀ ଭାଗୀରଥି ସାହୁ |
| ଟ୍ୱେଣ୍ଟି ନାଇନ୍ — | ୱିନର- | ଶ୍ରୀ ବାରୁଣୀ ପ୍ରଧାନ |
| | | ଶ୍ରୀ ବୈଷ୍ଣବ ଚରଣ ବେହେରା |
| | ରନର୍- | ଶ୍ରୀ ରବୀନ୍ଦ୍ର କୁମାର ପଣ୍ଡା |
| | | ଶ୍ରୀ ଜୟ ନାରାୟଣ ପଣ୍ଡା |
| ବ୍ରିଜ୍ ମାଷ୍ଟର ପେୟାର — | ପ୍ରଥମ- | ଶ୍ରୀ ସୀମାଞ୍ଚଳ ମହାରଣା |
| | | ଶ୍ରୀ ଗଣେଶ ବାଗତି |
| | ଦ୍ୱିତୀୟ- | ଶ୍ରୀ ଦୀନବନ୍ଧୁ ଦାନୀ |
| | | ଶ୍ରୀ ଡି. ସି. ନାଗ |



Digitized by PPRACHIN, SOA



ଉତ୍କଳ ଦିବସର ସଭାମଞ୍ଚ ଉପରେ
ଅଧ୍ୟାପକ ଶ୍ରୀ ଅଜିତ କର ଓ ଶ୍ରୀ ସାରଙ୍ଗ ପ୍ରସାଦ ହୋତା I. A. S.



ଇଂଜ ଇନ୍‌ଷ୍ଟିର କ୍ରୀଡ଼ାକଳାକାରମାନଙ୍କୁ ମୁଖ୍ୟ ଅତିଥି
ଶ୍ରୀ ଚନ୍ଦ୍ରଶେଖର ନନ୍ଦ ପୁରସ୍କାର ବିତରଣ କରୁଛନ୍ତି

Digitized by PPRACHIN, SOA



ବୋଇତ ବନ୍ଦାଣ ଉତ୍ସବର ମୁଖ୍ୟ ଅତିଥି ଓ ମୁଖ୍ୟ ବକ୍ତା
ଅଧ୍ୟାପକ ଶ୍ରୀ ହରନାଥ ମିଶ୍ର ଓ ଅଧ୍ୟାପକ ଶ୍ରୀ କନାଇ ପଟ୍ଟନାୟକ



୧୯୭୭ ମସିହା ଜାନୁୟାରୀ ୨୬ ତାରିଖରେ ହୋଇଥିବା
ବଣଭୋଜି ଆହାର ପର୍ବର ଏକ ଦୃଶ୍ୟ

Digitized by PPRACHIN, SOA

# ଭଂଜ ଜୟନ୍ତୀ ଓଡ଼ିଶୀ ନୃତ୍ୟ ପ୍ରତିଯୋଗିତାର ଶ୍ରେଷ୍ଠ କଳାକାରଗଣ



ମିସ୍ ଜୋଲ୍‌କାନ୍ତା

ପ୍ରଥମ (ସିନିଅର)



କୁମାରୀ ମମତା ମହାପାତ୍ର

ପ୍ରଥମ (ଜୁନିଅର)



କୁମାରୀ ମମତା ନାୟକ

ଦ୍ୱିତୀୟ (ସିନିଅର)



କୁମାରୀ ସବିତା ମହାରଣା

ଦ୍ୱିତୀୟ (ଜୁନିଅର)

Digitized by PPRACHIN, SOA



ମାଳବିକା ଦେଓ

(ଶ୍ରେଷ୍ଠ ଅଭିନେତ୍ରୀ)



ବିରୂପାକ୍ଷ ମିଶ୍ର

(ଶ୍ରେଷ୍ଠ ସହଅଭିନେତା)



ପ୍ରକାଶିତ ଲେଖା ପାଠକର ରୁଚି ପାଇଁ ଉଦ୍ଦିଷ୍ଟ । ଲେଖକ/ଲେଖିକାମାନେ ସେମାନଙ୍କୁ ଯେଭଳି ଭାବରେ ପ୍ରକାଶ କରିଛନ୍ତି ସେଥିପାଇଁ ଆମେ କୌଣସି ଦୃଷ୍ଟିରୁ ସଂଶ୍ଳିଷ୍ଟ ରହିବୁ ନାହିଁ ।

—ସମ୍ପାଦକ ମଣ୍ଡଳୀ—

ବହୁ କୁଶଳୀ ଶିଳ୍ପୀଙ୍କର ଲେଖା ଆମେ ପାଇଥିଲୁ । ଆମେ ସେମାନଙ୍କୁ ଆମର ପତ୍ରିକାଭୁକ୍ତ କରି ପାରିନୁ ସ୍ଥାନାଭାବ ଅସୁବିଧା ହେତୁ । ସେମାନଙ୍କର ସହାନୁଭୂତି ପାଇଁ ସାଧୁବାଦ ଜ୍ଞାପନ କରୁଛୁ ।

—ସମ୍ପାଦକ—

ଉତ୍କଳ ସାଂସ୍କୃତିକ ପରିଷଦ

Digitized by PPRACHIN, SOA

*With the best compliments from*

# OTTO INDIA PRIVATE LIMITED

**Structural & Mechanical Works**

P.O. Kalunga, Dist: Sundargarh

**ORISSA**

WORKS:

P. O. Kalunga,
Dist: Sundargarh/Orissa-
Phone No. 3166 RKL.
Phone No. 38 Klg.
Telex No- RL OTTOIND 210

HEAD OFFICE:

10, Middleton Row,
Calcutta—71
Phone No. 21-3606
(PBX 5 Lines)
Telex No. 021-7079.

DESIGNERS, MANUFACTURES AND TURN-KEY CONTRACTORS FOR COKEOVEN PLANTS, BYPRODUCTS PLANTS, COAL AND COKE HANDLING PLANTS, GAS PRODUCER PLANTS, CARBONISING PLANTS, CHEMICAL PLANTS, SYNTHESIS GAS PLANTS, TOWN GAS PRODUCTION PLANTS, CONTINUOUS NEUTRALISATION PLANTS FOR TREATMENT AND PURIFICATION OF INDUSTRIAL EFFLUENT AND DOMESTIC SEWAGE AND WATER CIRCULATION SYSTEMS.

**Exporters of Sophisticated Machineris & Components for Coke Oven Plants.**

**You never wanted— but you are pregnant.**
**Solution— Abortion at approved Hospital.**

**Please contact**

- ★ Medical College Hospital —Post-Partum—Programme — M. T. P. Centres.
- ★ District Headquarters Hospitals.
- ★ Capital Hospital, Bhubaneswar.
- ★ Ispat General Hospital, Rourkela.
- ★ H. A. L. Hospital, Sunabeda.
- ★ Any approved M. T. P. Centre.

***For free & legal abortion before 20 weeks.***
***Identify/ Address—Married / Unmarried.***

**KEPT. SECRET**

State Family Planning Bureau: Orissa: Bhubaneswar

Digitized by PPRACHIN, SOA

# ପୂଜ୍ୟପୂଜାର ପୂଜାରୀ ଓ ନିବେଦିତ ଅର୍ଘ୍ୟ

## କବିତା



## ପ୍ରବନ୍ଧ



Digitized by PPRACHIN, SOA



# ପୂଜ୍ୟପୂଜା: ଆମର ପ୍ରଥମ ସଂକଳ୍ପ

ବ୍ୟକ୍ତିର ବିକାଶ ସମଷ୍ଟି ସମସ୍ତରେ ସମଷ୍ଟିର ସ୍ପନ୍ଦନ ହୁଏ । ସମାଜ ଜୀବନର ଏକ ମୁଖାପେକ୍ଷୀ ଭାବଧାରାରୁ ବ୍ୟକ୍ତିସତ୍ତା ନିଜକୁ ବୌଦ୍ଧିକ ବିକାଶ ସୂତ୍ରର ସହାୟରେ ବିଚ୍ଛିନ୍ନ କରାଇନିଏ । ସେ ଦିଏ ସମଷ୍ଟି ପର୍ଯ୍ୟବେକ୍ଷଣର ନୂତନ ଇଙ୍ଗିତ । ତା'ର ଅଭିବ୍ୟକ୍ତିରେ ଫୁଟିଉଠେ ନୂତନ ଭାବନାର ଶତଦଳ । ନୂତନ ଉନ୍ମେଷର ଯେ ଆଲୋକିତ କରିଯାଏ ଅନ୍ଧାର ମୂଲ୍ୟବୋଧକୁ । ଏହା କଳ୍ପନା କରିବା ଯେତିକି ସହଜ ପ୍ରତ୍ୟକ୍ଷ କରିବା ସେତିକି ଦୁରୂହ । ଏଇ ଆଦର୍ଶ-ପ୍ରତିଷ୍ଠା ପାଇଁ ସହ୍ୟ କରିବାକୁ ପଡ଼େ, ସମସ୍ତର ବିଷଦଗ୍ଧ ଅଙ୍କୁଶ-ଜାଳିବାକୁ ପଡ଼େ ଶରୀରର ଚିର-ପୋଷିତ ଜୀବକୋଷ—ଆତ୍ମପୀଡ଼ନର ମହାଯଜ୍ଞରେ ମନୁଷ୍ୟର ଆତ୍ମା ଅହରହ ହୁଏ ବିଳାପମୁଖର । ଏଇଥି ପାଇଁ ପୃଥିବୀ ଇତିହାସରେ କେତେ କାଳଜୟୀ ଗୁଡ଼ାଏ ଦୃଷ୍ଟାନ୍ତ । ରକ୍ତପାତ, ଉତ୍ପୀଡ଼ନ, ହିଂସାର ବଳିପିଠିରେ କେତେ ଯେ ମୂଲ୍ୟବାନ ଆତ୍ମା ଚିର-ବିସ୍ମୃତ ହୋଇଛି—ଯାହାକୁ ଇତିହାସର ବକ୍ଷ ଧାରଣ କରିବାକୁ ଅକ୍ଷମତା ପ୍ରକାଶ କରିଛି । କିନ୍ତୁ ଏହି ମହାନ ଯଜ୍ଞରେ ଯେଉଁମାନେ ତ୍ୟାଗପୂତ ଆଦର୍ଶର ଧ୍ୱଜା ଟେକି, ବଞ୍ଚିବାର ମୂଲ୍ୟବୋଧକୁ ପ୍ରତିଷ୍ଠା କରିବାର ନିଷ୍ଠା ପ୍ରକାଶ କରିଛନ୍ତି, ସେହିମାନଙ୍କର ପୁରୁଷକାର ସମାଜକୁ ନିଜର ଅନୁଗାମୀ କରିବାର ସିଦ୍ଧିଲାଭ କରିଛି । ସେତେବେଳେ ସେମାନଙ୍କର ହୋଇଛି ପ୍ରକୃତ ବିଜୟ । ଯାହା ଫଳରେ ମୃତ୍ୟୁ ଗହ୍ୱରରୁ ସେମାନଙ୍କୁ ଫେରାଇଆଣି ସମାଜ ସେମାନଙ୍କୁ ପିନ୍ଧାଇଛି ମହାମାନବର ମହୋଜ୍ଜ୍ୱଳ ମୁକୁଟ—ଶତଜନ୍ମ ହୋଇ ଯାଇଛି ସେମାନଙ୍କର ପ୍ରତିଶ୍ରୁତି—ବାଧଗ୍ରସ୍ତ ଭଳି ସମାଜ ଧାଇଁଛି ସେମାନଙ୍କ ପଦାଙ୍କକୁ ଅନୁସରଣ କରି । ଯୀଶୁ, ଗାନ୍ଧୀ, ଗାଲିଲିଓ, ଆଇନଷ୍ଟାଇନ, ମାର୍ଟିନ୍ ଲୁଥର କିଙ୍ଗ, ମହାତ୍ମା ହୋଇଛନ୍ତି ଏଇ ଦିଗଦର୍ଶନ ଉପରେ । ସେମାନେ ଆଜି ମନୁଷ୍ୟ ଆତ୍ମାରୁ ଉତ୍ତୀର୍ଣ୍ଣ ହୋଇ ଦେବତାର ଆସନରେ ଅଧିଷ୍ଠିତ । ସେମାନେ ପୂଜ୍ୟ । ସେମାନଙ୍କର ଅସରନ୍ତି ତ୍ୟାଗର ପ୍ରତିଦାନରେ ମଣିଷ କରିଛି ସେମାନଙ୍କର ସ୍ମୃତି ସ୍ମରଣ । ସବୁ ସମିତିଠାରୁ ଅଚମ୍ଭକର ଉଦ୍ଦେଶ୍ୟ ଏବଂ ଆଦର୍ଶରେ ମଧ୍ୟ ସେମାନେ ସମାଜର ବକ୍ତବ୍ୟ ହୋଇପଡ଼ିଛନ୍ତି । ଯୁଗ ଯୁଗର ଆଶା ଆକାଙ୍କ୍ଷାକୁ ସେମାନେ ଯୋଗାଇ ଆସୁଛନ୍ତି ସ୍ୱତଃସ୍ଫୂର୍ତ୍ତ ସମ୍ମତି । ତେଣୁ, ଜାତିର ଜୟଯାତ୍ରା ପାଇଁ—ପ୍ରଗତି ପାଇଁ ପୂଜ୍ୟପୂଜାର ରହିଛି ଏକ ସୀମାହୀନ ପ୍ରୟୋଜନୀୟତା । ଆମ ଓଡ଼ିଶା ଭୂଇଁର ସେହିଭଳି ଚିରଚର୍ଚ୍ଚିତ-ବନ୍ଦିତ-କାଳଜୟୀ-ପୁରୁଷ ମହାତ୍ମା ଗୋପବନ୍ଧୁ । ବଳିଷ୍ଠ ବ୍ୟକ୍ତିଚେତନାରେ ସମୁଜ୍ଜ୍ୱଳ ହୋଇ

Digitized by PPRACHIN, SOA

ସମଷ୍ଟିର କଲ୍ୟାଣକାମନା କରି ସେ ନଗାଡ଼ି ଦେଇଛନ୍ତି ତାଙ୍କ ଚମ୍ପୂର ପ୍ରେମସିକ୍ତ ଦୟାର୍ଦ୍ର ଜଳଧାରା । ଲୁହର କାବ୍ୟରେ ସେ ଲିପିବଦ୍ଧ କରିଛନ୍ତି ଜେକ୍ସର ଆକର୍ଷଣୀୟ ଭାବ ରାଶିକୁ । ଯାହାର ପ୍ରଭାବରେ ଏ ମାଟି ପାଏ ମହାମାନବିକତା, ସାତ୍ତ୍ୱିକ ବିଶ୍ୱାସ, ସୁକୋମଳ ଭ୍ରାତୃତ୍ୱ, ସ୍ୱଦେଶପ୍ରେମ, ନିରପେକ୍ଷ ଦୃଷ୍ଟିଭଙ୍ଗୀ, ପ୍ରଜ୍ଞାବୋଧ ଏବଂ ସର୍ବୋପରି ଦରଦ, ଅଶ୍ରୁ, ସ୍ନେହ, ପ୍ରେମର ଐକାନ୍ତିକ ସ୍ପର୍ଶ । ସେହି ଅମର ଆତ୍ମାଙ୍କ ଚରଣ କମଳରେ ଆମେ ଢାଳି ଦେଉଛୁ ଆମର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି "ସ୍ମରଣିକା"-୧୯୭୭ର କଳେବରକୁ ହାର୍ଦ୍ଦିକ ଉତ୍ସର୍ଗ କରି ଏବଂ ଏହି ଅବକାଶରେ କାମନା କରୁଛୁ ତାଙ୍କର ଚିରପୋଷିତ ଆକାଂକ୍ଷାର ମୂର୍ତ୍ତ ପ୍ରତୀକ ଜନନୀ ଜନ୍ମଭୂମି ଉତ୍କଳମାତାର ଚିର ଅଖଣ୍ଡତ୍ୱ ॥

# ମାନସମନ୍ଥନ: ଆମର ଦ୍ୱିତୀୟ ଅଙ୍ଗୀକାର

"ସ୍ମରଣିକା" ଅକୁଣ୍ଠିତ ଚିତ୍ତରେ ଆହରଣ କରେ ପ୍ରତିଭାକୁ । ଯେଉଁମାନେ ସମସ୍ତର ସ୍ୱରକୁ ହୃଦୟେ ହୃଦୟରେ ଅନୁଭବ କରି ମୂର୍ଚ୍ଛନା ଦିଅନ୍ତି ସେହିମାନଙ୍କୁ "ସ୍ମରଣିକା" ଦିଏ ଉନ୍ମେଷର ଅଧିକାର ।

ଆମ ଶତାବ୍ଦୀର ଅଙ୍ଗୀକାର ଆଜି ବହୁ ଭାବରେ ପରିଫଳିତ । ସମସ୍ତର ସ୍ୱାକ୍ଷରକୁ ଅନୁଧ୍ୟାନ କରିବାର ଗଭୀର ଗବେଷଣା ଆଜି ମନୁଷ୍ୟର ଇଚ୍ଛାକୃତ ପିପାସା । ଏଥିପାଇଁ ଅବଶ୍ୟକ ପ୍ରକୃତ ମାନସ ମନ୍ଥନ । ବିଶ୍ୱ ସ୍ଥିତିରେ ନିଜକୁ ଅତି ବିଶ୍ୱସ୍ତ ଭାବରେ ଉପଲବ୍ଧି କରିବା ପାଇଁ ମାନସ ମନ୍ଥନର ନିର୍ଲିପ୍ତ ଦୃଷ୍ଟିକୋଣ ଆଜି ଏକାନ୍ତଭାବରେ ସରଳ । ମଣିଷ ଆଜି ନିଜ ଆତ୍ମା ଭିତରେ ବିଶ୍ୱଆତ୍ମାକୁ ନିରୀକ୍ଷଣ କରିପାରୁଛି—ପିଣ୍ଡବ୍ରହ୍ମାଣ୍ଡକୁ ଏକାକାର କରି ! ଏଥିପାଇଁ କବି, ଲେଖକ ଭାବୁକର ତୃତୀୟ ନୟନର ଶକ୍ତି ପ୍ରଖର ହୋଇଛି । ଯୁଗ ଆଗରେ ଉପସ୍ଥିତ ହୋଇଛି ଏକ ଚୁଡ଼ାନ୍ତବୋଧର ଫଳକ । ମଣିଷର ସ୍ଥିତି, ମୁକ୍ତ ଗଗନର ପରିଧି ଅଙ୍କିତ ହୋଇ ପାରୁନି ଏକ ଜ୍ୟାମିତିକ ପଦ୍ଧତିରେ । ଜୀବନଦ୍ରଷ୍ଟା ଭାବନାର ଶତାବ୍ଦୀର ମାନଦଣ୍ଡକୁ ମାପିବାର ଶୈଳୀ ଆଜିଅବି ବେଶୀ ଦୂରରେ ନାହିଁ ।

ଏହି ପରିପ୍ରେକ୍ଷୀରେ "ସ୍ମରଣିକା" ପରିବେଷଣ କରିଛି ତା'ର ଚୁଡ଼ାନ୍ତବୋଧର ସ୍ୱାକ୍ଷର ତରୁଣ ନବୀନମାନଙ୍କର ଚିନ୍ତା ଚେତନାକୁ ନେଇ । ବିଶ୍ୱମାନଦଣ୍ଡରେ ଏମାନଙ୍କ ତୁଳନା ଅଂଗୀକୃତ ନହେଲେ ହେଲେ ବି ନିଜ ଦୃଷ୍ଟିକୋଣର ବିଶ୍ୱସ୍ତତା ନେଇ ସେମାନଙ୍କର ଢାଞ୍ଚାଟିକୁ ବୈଶିଷ୍ଟ୍ୟମଣ୍ଡନ ଲୁଚେନି । ସମସ୍ତର ନିର୍ଯ୍ୟାତନାରେ ଏମାନଙ୍କର ଉଦ୍ଭାବ ନ ହେବାର ଏକ ଉତ୍କୃଷ୍ଟ-ଭବିଷ୍ୟତର ଯୋଜନା ଗଠନରେ ଏମାନଙ୍କର ଭୂମିକା ଗୁରୁତ୍ୱ ଭଳି ସ୍ମରଣୀୟ ହେବ ।

ଏହି ଯାହାକୁ ଅବ୍ୟାହତ ରଖିବା ପାଇଁ "ମାନସ ମନ୍ଥନ"ରେ ସଂସ୍ଥାପିତ ଆବଶ୍ୟକତା ରହୁଛି । ଅନ୍ତର୍ଦ୍ଦୃଷ୍ଟିର ବ୍ୟାପକତା, ଜୀବନର ବିଶ୍ଳେଷଣଯୋଗ୍ୟ ବିଶ୍ଳେଷଣ, ଚେତନାର ଭୂୟୋଦର୍ଶନ ପାଇଁ ନିୟମିତ ପଠନ ମନନ ତଥା ଅନୁଧ୍ୟାନ ପାଇଁ ଆଜିର ସାଙ୍କ ଉଦ୍‌ବୁଦ୍ଧ କରୁ । ଏତିକି କାମନା ।

ଯେଉଁମାନଙ୍କର ଶୁଭସ୍ପର୍ଶରେ "ସ୍ମରଣିକା"ର ତନୁ ଋଦ୍ଧିମନ୍ତ ସେହିମାନଙ୍କୁ ଆନ୍ତରିକ ଅଭିନନ୍ଦନ ଜ୍ଞାପନ କରୁଛୁ କହ୍ଲାଦକର ଭଳି ମହାନ ହୋଇଥିରେ ।

। ଜୟ ଜଗନ୍ନାଥ ।

Digitized by PPRACHIN, SOA



# କବିତା

## ଡମରି ସ୍ନାୟୁର ସୀମା

ଭୁଲଯାଇ ସେତେ ସବୁ ନୀରବଶୂନ୍ୟତା
ନିଷ୍ଫଳ ପାଖୁଡ଼ା ସବୁ ଝରଝର ପଡ଼େ
ଶୂନ୍ୟତାରେ ଆତଯାତ ଗର୍ଭବତୀ ବେଦନାର
ଛଳଛଳ ଲହେ ଉପର ଅନୁଚ୍ଛ୍ୱିତ ଏକବଦ୍ଧ ସୁସ୍ୱ
ଉଦ୍ଘାଟ ଛଡ଼ଟାଣି ଦୃଶ୍ୟ ଅଜ
ମୋ ନିଜର ଶୂନ୍ୟମନ, ଅଶାନ୍ତ ଅଶ୍ରୁର ସୂଚନା
ଏବଂ ନଚତନାର ନିଷ୍ଫଳ ମୁହୂର୍ତ୍ତ
ଝରିପଡ଼େ ଚିଲପରି ନିଶୂନ ଅନ୍ଧାରେ
ଅନ୍ୱେଷର ବାହୁକୁ ବିସ୍ତାରି
ବନ୍ଧିବାର ମଧୁ ବ୍ୟଞ୍ଜନାରେ ।।

ତାସର ତବଡା ଶୁଭ୍ର ଅଂଧାରୀ ତାବର ଗୃହେ
ବିସ୍ଫୁର ଉଯଟିତ ଦୀପ ଜଳିଉଠେ ଅଗ୍ନିନଳ
ସ୍ମୃଷ୍ଟିଦାନେ ସେହିକ୍ଷଣେ
ସୁତନ୍ତ୍ର ବେଳଂ ଅଜ ବୃଦ୍ଧ ଏବଂ ବିସ୍ମୃତର
ବାରଂବାର କରଯାଛେ
ସେ' ଶାଶ୍ୱତ ମୂର୍ତ୍ତି ।।

ଜଳ ବନ ନଦୀ ଗିରି ଉତ୍କଳର ଯେତେ ଜନପଦ
ଆଜି ସତ୍ୟବାଦୀ ବନ ଡାକେ ଧୀନହୀନ ଗୋପବଂଧୁ
ଏଥି ତୁମେ ଶୁଣ—
ଗୋଟେ ଖାଲି ଅସମ୍ଭବ ଢାଦଶୀର ଘନଘନ
ଶବ୍ଦର ମହାସମ୍ମେଳନ ।।

ଶ୍ରୀ ଗୌରୀଶଙ୍କର ଶତପଥୀ
ଜବ କୁଟୀର, ଭଞ୍ଜନଗର—୧

Digitized by PPRACHIN, SOA

# ଗୋପବନ୍ଧୁଙ୍କୁ

ମନ ଗମ୍ଭୀରର ବେଦନା ସବୁ ଫିଟିପଡ଼ି ଭୁଷି ହୁଏ ।
ଫିଟିପଡ଼େ ସେଥିପାଇଁ,
ତୋ ଯନ୍ତ୍ରଣାରେ ଝରୁଛ ଝରୁଛ
ସେ ରକ୍ତରେ ଫୁଟିଥିବା ଫୁଲ ସବୁ
ତୋ ଶ୍ରମ ତଥ୍ୟର ଗୀତାର ରାଗିଣୀ ତୋଳନ୍ତ ବୋ'ଲ ।

କଥାସିଏ କହେ,
ଝଅଁଳ ପବନ ଆସି ଧୂଳି ଝାଡ଼ିଦିଏ !
କଥାସବୁ ଥମ ପାଇଁ, ଅଶ୍ରୁ କିନ୍ତୁ
ଜଗନ୍ନାଥ ଦେଖିଛୁ ଆଖିରେ
ବାଇଶି ପାହାଚ ତାର ଉବୁଟୁବୁ ହୁଏ ।

ସମର୍ପି ଦେଇଛୁ ଜାତିକୁ
ମାଥ ପଦ ! ! !
ବେଗରେ ଶୋଇରହୁ କାନ୍ଦୁଥିବା ପୁଅ ତୋର
ଗୋଟିଏ ତ ନୁହେଁ ?

ଦେହରେ ଅଶାନ୍ତ ଛାତି,
ଜୀବନଟା ବର୍ଷ ଦଣ୍ଡ ନୁହେଁ ! ! !
ତଥାପିବ ବୁକୁତର ହୃତ୍‌ପିଣ୍ଡକୁ
ଭାଡ଼ିବାକୁ ଦେବ,

"ମିଶିବ ତୋ ଦେହ ଶବ ଏ ଦେଶ ମାଟିରେ
ଦେଶବାସୀ ଯିବେ ସବୁ ତୋହରଣ ଟିଟିବେ ।"

ନଦାମନ ଉଚ୍ଛ୍ୱାସରେ କେତେବ କ'ଣ ଏମାନ୍ତିକୁ ଯାଉ,
କଙ୍କାଳକୁ କହୁଥିଲ ସିପାହିରେ,
ଖୋଲିଦିଏ ରୁଦ୍ଧ ଦ୍ୱାର ଦେଖିନିଏ
ଗୋ-ଧୂଳିର ଭଅଁଳଥ ଖଣ୍ଡ ଆଜ ଧୂଳିର ଧରଣୀ ।

ଧୂଳି ଧୂସରିଅ "ସାଧୁଅରେ" ତୁ
ତୋ ବାପାକୁ କହୁଥିଲ :—"ବାପା ହେ" ! ! !
ରାଜା ମୁଁ ହେବ ନାହିଁ,
ମନ୍ତ୍ରୀର ମୁକୁଟ ମୋର ଦରକାର ନାହିଁ,



Digitized by PPRACHIN, SOA

ସାଧକ ହେବିନି ମୁଁ, ହୋଇବି ବାହକ ।
କହିଥିଲି ରୂପକୁ ମୋ ଅନ୍ତରର,
"ବାଧକ" ମୁଁ ହେବି ।

ହେଲିରେ "ବାଧକ",
ରୋଗ, ଶୋକ, ଜରା ଓ ମୃତ୍ୟୁରେ
ବୁଲି ବୁଲି ଯାହୁଗଲି ପଥ ।

ଓଡ଼ିଶାରେ ବର୍ଷା ହେଉଛି ତୋ ଲୁହରେ 'ନାଆ' ବୁଲିଯାଏ,
'ନାଆ' ଥରେ ବାହୁଥିଲି କତଲିକରେ ପହଞ୍ଚି ହେଲେ,
ଭାସୁଥିଲା ମଣିଷର ଶବ ସେହି ବନ୍ୟାର ଜଳରେ
ତୃଷାର୍ତ୍ତ ହୋଇଲି, ଜଳ ପିଇନେଲି,
ସମସ୍ତଙ୍କୁ କହିଗଲି :—ଘୃଣା ତୁମେ କାହାକୁ କରୁଛ ?
ସବୁତ ଏ ମାଟିର ଅମୂଲ୍ୟ ସଂଗୀତ
ବର୍ଷିବାର ବେଦ ।

ଯେତେ ଅଜ ଚେତନାର ସ୍ୱର ଉଠେ
ମନେ ପଡ଼େ ସବୁ ଭୁଲିଯାଏ,
ମଣିଷ ନିଶ୍ୱାସ ଓ ହାଇ ହାଲେ ଶୂନ୍ୟରେ ଶୂନ୍ୟତାର
ଫୁଲ ଝଡ଼ିପଡ଼େ, ଲୁହରେ ତ ବନ୍ୟା ଆସେ
ହଏ ତାକୁ ପରଶ ଦଏନି ।

ମନକୁ ସେ ମନମାରି ରହିଯାଏ
ବେଦନାର କାରୁଣ୍ୟରେ ଛଳୁ ଫୁଟିଉଠେ ।
ହୃଦୟକୁ ବୁଝାଏ ସେ ଅନାଗତ ପାଇଁ
ଯନ୍ତ୍ରଣାର ସିନ୍ଦୁକରେ ଗୁଡ଼ିଏ ପଡ଼ିଛି
କିଏ ଅଜ ଖୋଲିବ କାହିଁକି ?

ତୋ ଶବର ଯନ୍ତ୍ରଣା ଆଜି, ଦୁଃଖର ସେ ବେଦନାର କବିତା,
ସବୁ ଭୁଲି ହୁଏ ମଣିଷ ଗାଏ ଅଜ
ସେ ଦେବୁକନ୍ ଏ ଯୁଗର ଅନ୍ଧାର ତାକୁ
ବିଭ୍ରାନ୍ତ କରିଛି ! ! !

ଶ୍ରୀ ବୈକୁଣ୍ଠନାଥ ଓଝା
କୋରାପୁଟ



Digitized by PPRACHIN, SOA

# ପ୍ରାର୍ଥନାର ଶେଷ

ତୁମେ ଜନ୍ମ ହୋଇ
ତୁମର ଖେଳା ଶେଷ କରି
ଦେବଦୂତ ହେବାପରେ
ବନ୍ୟା ମରୁଡ଼ି ଦୁର୍ଭିକ୍ଷମାନଙ୍କର
ଇତେବାର ପଡ଼ିଲା ।

ଧୀବର ଝିଅମାନେ
ଗୁଲ୍ଲ ଗୁଲ୍ଲ ସ୍ଥିର ହୋଇଗଲେ
ସେମାନଙ୍କ ବାପ-ମା
ମାଟି ଅଉ ପାଣିର ଲୋକମାନେ
ସ୍ୱର୍ଗକୁ ଚାହିଁ
ଇନ୍ଦ୍ରକୁ ପ୍ରାର୍ଥନା କଲେ—

ବର୍ଷା ହେଉ
ବର୍ଷା ଛୁଟୁ
ବର୍ଷା ହେଉ
ବର୍ଷା ଛୁଟୁ
ଅଉ ତୃଷାପ୍ତ ପ୍ରାର୍ଥନା
ଛୁଟି ନ ଥିଲା
ଏବେ ବି ନାହିଁ ।

ତୁମ ମୃତ୍ୟୁର ବହୁ ଦିନ ପରେ
ନଦୀରେ ପାଣି ଆସେ
ଦୁଇକୂଳ ଲଙ୍ଘେ
ଘର ଦ୍ୱାର ଗାଁ ଓ
ପ୍ରାଣୀମାନେ
ଭାସି ଯାଆନ୍ତି
ଅଥବା ମାଟିଫାଟି ଆଁ କରେ
ଦୁର୍ଦ୍ଦଶା ଅଜବ ଗୁଡ଼ନ ।

ଗୋପବନ୍ଧୁ !
ଅପୂର୍ଣ୍ଣ ତୁମର ସିଂହାସନ
ସେ ସିଂହାସନର ସ୍ଥାନ
ଆମ ସମସ୍ତଙ୍କ ମନରେ
ତୁମେ ଧୃବ ତାରର
ଜ୍ୟୋତି ନେଇ ଏବେବି
ଝଟକୁଛ ଆକାଶରେ ।

ଏବେବି ଆମର ପ୍ରାର୍ଥନା ଚାଲିଛି
ଇନ୍ଦ୍ର ! ବର୍ଷା ହେଉ
ଇନ୍ଦ୍ର ! ବର୍ଷା ଛାଡ଼ୁ
ତୁମେ ଜାଣ କେବେ
ଏ ପ୍ରାର୍ଥନାର ଶେଷ ହେବ
ମାଟିର ପ୍ରଜାପତିମାନେ
ଆନନ୍ଦରେ ଉଡ଼ିବେ
ଓ କହିବେ
ଆମର ଫସଲ ନିରାପଦ
ଆମେ ଗୋପବନ୍ଧୁଙ୍କର
ଅସଲ ଦାୟାଦ ।

—୦—

ଶ୍ରୀ ଯଦୁନାଥ ଦାଶ ମହାପାତ୍ର
"ଓଡ଼ିଶା ରାଜ୍ୟ ବିଧାନ ସଭା"

## ନିର୍ବାଣ ସ୍ୱର

ଅନ୍ଧାରରୁ ଆଲୋକକୁ
ଅସତ୍ୟରୁ ସତ୍ୟକୁ
ମୃତ୍ୟୁରୁ ଅମୃତକୁ—
ଯିଏ ଦିନେ ଦେଖାଇଲା ପଥ
ସେ ଦଧିଚୀ !
ସେ ଗୋପବନ୍ଧୁ ଦାସ !
ସେ ନୁହେଁ ଉତ୍କଳର ମଣି
ମଣି ଯିଏ ସମଗ୍ର ବିଶ୍ୱର ।
ଯିଏ ସଖା
କୋଟି କୋଟି ନିସ୍ୱ ମଣିଷର ।
ବର୍ଷାର/ବନ୍ୟାର
ବାତ୍ୟାର/ବତାସର
ମରୁଡ଼ିର/ମହାମାରୀର
ଅଭାବର/ଅନାଟନର
ଏବଂ ସମସ୍ତ ନିଷ୍ପେଷିତ ହୃଦୟର ।



Digitized by PPRACHIN, SOA

ସେ କର୍ମ ଯୋଗୀ !
ଶତାବ୍ଦୀର ସିଦ୍ଧ ପୁରୁଷ !
ମୂର୍ତ୍ତିମନ୍ତ ଅବତାର
ଦୟାର/କ୍ଷମାର
ସତ୍ୟର/ଶାନ୍ତିର
ସେବାର/ସହଯୋଗୀତାର
ଉଦାରତାର/ମହାନୁଭବତାର
ସର୍ବୋପରି ସକଳ ମାନବୀୟ ଗୁଣର ।
ସେ କର୍ମ ଯୋଗୀ
ତୁରିଅନା ବକୁଳ ବନର ।
ସେ ସାରଥୀ
ଜାତି ନବ ଘୋଷର
ସାହିତ୍ୟର/ସଂସ୍କୃତିର
ଶିକ୍ଷାର/ସମାଜ ସଂସ୍କାରର
ଏବଂ
ବିଚ୍ଛିନ୍ନାଞ୍ଚଳ ସମନ୍ୱୟର ।
ହେ ଯୁଗ ପୁରୁଷ !
ମହାଶକ୍ତି ମହାସମୁଦ୍ରର
ମହାନନ୍ଦ ଘନ ତମିସ୍ରାର
ଜୀବନର ପ୍ରତିପଦ ପାତେ
ଆମେ ଲୋଡ଼ୁ ତୁମର ସ୍ୱାକ୍ଷର ।



ଫକୀର ଚରଣ ପାଢ଼ୀ
ନବରଙ୍ଗପୁର, (କୋରାପୁଟ)

---

ଏକର ବିନାଶେ ଅନେକ ପ୍ରକାଶେ
ସୃଷ୍ଟିର ଏ ନିତ୍ୟବିଧି,
ଏକର ଯା କ୍ଷୟ ଅନେକ ଉଦୟ
ଅନେକ ଏକର ସିଦ୍ଧି ।


Digitized by PPRACHIN, SOA

# ଏହି କି ସେ !!!

ଏହି କି ସେ ଜଗନ୍ନାଥ ଚକ୍ରଧର ହସ୍ତେ,
ଦୀନତାର ଦୁଃଖ-ନକ୍ର ଛେଦନେ ବ୍ୟାପୃତ,
ଏହି କି ସେ ବଳିଅର ମହାବାହୁ ତୋଳି,
ଅଶକ୍ତ କମ୍ପଣ ଲକ୍ଷ ଶମିବାରେ ବ୍ୟସ୍ତ ॥ ୧ ॥

ଏହି କି ସେ ଶୁଦ୍ଧବୁଦ୍ଧ ସତ୍ୟର ସନ୍ଧାନୀ,
ପରମ କରୁଣାମୟ ନର ଦେହଧାରୀ,
ଝରଣାର ମନନେଇ କୁଳୁକୁଳୁ ତାନେ,
ପାଷାଣର ବୁକୁଚିର ଯାଏ ଝରି ଝରି ॥ ୨ ॥

ଏହି କି ସେ ସତଂବ୍ରହ୍ମ ପରମସ୍ୱରୂପ,
ଓଗାଲ୍‌କ ବିଦ୍ୱାଷ ଦୀନ ଦାରିଦ୍ର୍ୟ ଭଞ୍ଜନ,
ଉତ୍କଳ ଉତ୍ତୁଙ୍ଗ ଧର୍ମ-ବିଭବ ମଣ୍ଡିତ,
ଦଳିତ ପତିତ-ଆର୍ତ୍ତ ନୟନର ଅଞ୍ଜନ ॥ ୩ ॥

ଏହି କି ସେ ଚିତ୍ରୋତ୍ପଳର ଯମୁନା କୂଳିଆ,
ଗହନ ବିପିନଗୁମ୍ଫା ଗୀତର ପଶରା,
ଉତ୍କଳର ନବଯୁଗ ନୂତନ ଆଲୋକ
କୋଟି ନେତ୍ର ପ୍ରେମପୂର୍ଣ୍ଣ ଅଶ୍ରୁର ପସରା ॥ ୪ ॥

ଏହି ସେହି ଗୋପବନ୍ଧୁ ! ଶରଧାର ଢାଲି,
ଏ ମାଟିର ନବକୃଷ୍ଣ, ନୂଆ ଇତିହାସ,
ଏ ଜାତିର ମହାରଥୀ, ବୀର ଭୀମସେନ,
ଭୀମକର୍ମୀ, କାଳଜୟୀ ପ୍ରେମର ପୁରୁଷ ॥ ୫ ॥

ତାହାର ଚରଣ ଧୂଳି ମୁଣ୍ଡ ଅଜ ତୋଳି,
ତାହାର ପ୍ରେରଣା ଯେନ କୋଟି ନେତ୍ର ଜଳେ,
ଅଶ୍ରୁଧାର ହେବା ଆମେ ଯାଇ ଯାଇ ଢାଳି,
ଉପ୍ପ କଥାଁ ସେ ଦେବତା ଅଛୁ ଆ ନ ଭୁଲେ ॥ ୬ ॥

ବାସୁଦେବ ପାତ୍ର
ସୁନା ବେଡ଼ା — ୩



Digitized by PPRACHIN, SOA

# ଆଶିଷ

ଦରଦ ପ୍ରାଣର ଦରଦୀ ବନ୍ଧୁହେ ଉତ୍କଳ ଜନନୀ ମଣି,
ବାଞ୍ଛା ମରୁଡ଼ର ସଖା ପରି ତୁମେ ଜାତିର ପରଶ ମଣି ।

ତୁମର ବିହୁନେ କାନ୍ଦେ ଅଜ୍ଞ ଦେଶ, କାନ୍ଦେ ଜନତାର ପ୍ରାଣ,
କେଉଁଠି ଦୂରେ ତୁମେ ଲୁଚିଗଲ ସତେ ଏଠି ତୁମେ ନିରମମ ।

ବର୍ଷା ଅସୁଛି, ବିଜୁଳି ମାରୁଛି ହୃଦୟରେ ହୁଏ ସ୍ପନ୍ଦନ,
ବନ୍ୟା ପ୍ରପୀଡ଼ିତ ଅଞ୍ଚଳ ଆଜି ଶୋକରେ କରେ ନର୍ତ୍ତନ ।

ବାଣୀ ସାଧକହେ ଦେଶ ସେବକହେ ପଡ଼ୁନିକି ତମ ମନେ ?
ବାନ୍ଧୁନି କି ପ୍ରାଣ ଆଜି ହେ ତମର ଗନ୍ଧବର ଦରଶନେ ?

କର୍ତ୍ତବ୍ୟ ତବ ପଡ଼ୁନି କି ମନେ ଅଳସୁଆ କାହିଁ ପାଇଁ ?
ଶୋଇଗଲ କିବା ହଂସୁଲୀ ଶେଯରେ ନିଦ ତୁମ ଭାଙ୍ଗେ ନାହିଁ ।

ବୁଦ୍ଧିନ ବନ୍ଧୁ ଦରଦୀ କବି ହେ ଦରଦେ ଆମର ନାଅ ।
ସରଗ ଦେଶରୁ ଶାଶ୍ୱତ ପ୍ରାଣହେ ଆଶୀର୍ବାଦ ଢାଳିଦିଅ ।

କର୍ମମୟ ହେଉ ପଥହେ ଅମର କର୍ମରେ କଟୁ ଜୀବନ,
ଶତ ବାର୍ଷିକୀରେ ଶତ ଆଶୀର୍ବାଦ କର ବନ୍ଧୁ ବିତରଣ ।

ଏତିକି ମାଗୁଣି ତୁମଠାରେ ଅମ ନ ହୁଅ କାରେ ନିର୍ଦ୍ଦୟ,
ସ୍ୱୀକାରଣ କର ଅଲୌକ ତମର କବି ହେ ଅଲୌକମୟ ।

ସାର୍ଥକ ହେଉ କର୍ମ ଆମର କୁସୁମିତ ହେଉ ପଥ,
ଜୀବନଟା ବିତୁ ଜାତିର ସେବାରେ ଅମୋଦରେ ଭରୁ ଚିତ୍ତ ।

ସୁଦର୍ଶନ ବେହୁରିଆ
ସୁନାବେଡ଼ା

---

ଜୀବନ କି ଖାଲି ନିରଶାର ବାଲି ମରୁ ମରୀଚିକା ସେନେହ ପ୍ରୀତି
ତେବେ କି ଆଶାରେ ବହ ଏ ସଂସାରେ ପର ପାଇଁ ନର ମରୁଛି ନିତି ।



Digitized by PPRACHIN, SOA

# ଅନ୍ଧକାରର ସୂର୍ଯ୍ୟ

ପ୍ରିୟ ଗୋପବନ୍ଧୁ, ଉତ୍କଳର ପ୍ରିୟ, ଉତ୍କଳ ଚରଣେ, ଉତ୍କଳ ମଣି
ତୁମେ ତ ଯାଇଛ ସେହି ଦୂର ଦେଶେ, ଯେ ଦେଶୁ କେହିବ ଢେଇ ବ ଫେରନ ।
ବକୁଳ ବନର ଥିଲ ଥିଲ ବାଆ ତ୍ୟାଗର ଅଗାଧ ହେଜ,
ଲୁଣଅନା କୁଞ୍ଜବନ ବିଦ୍ୟାଳୟ ତୁମକୁ ଖୋଜୁଛି ଆଜି ।
ତୁମର "ସମାଜ" ଜାଲ ଅନୁସରି ଗାଏ ନୂଆ ବେଶ ସାଜି,
ଝିଟିପିଟି ସୁଖ ହାଙ୍କ ଦୁର୍ମୁଖ ଯେତେ ସମ୍ପୂତାନ ପାଜି ।
ସ୍ୱର୍ଗରେ ସମାଜେ ଶାନ୍ତିର ବାଣୀ. ଶାସ୍ତ୍ରର ନୂତନ ଗଢ଼ନ କଥା,
କଏ ବା ଶୁଣୁଛି କାହାର ବଚନ ? ସମ୍ପଦର ଚିନ୍ତା ଆଜି ଅନ୍ୟଥା ।
ମେଦିନୀପୁରରେ ଓଡ଼ିଆ ମୁଣ୍ଡ, ଗୃହାନ୍ତି ଟିକାକ ଡରଲାଅଡ଼େ,
ଗୋଟିଏ ସ୍ୱରରେ ପ୍ରତିଧ୍ୱନି ଅଛେ "ଗୋପବନ୍ଧୁ ନାହିଁ" ଅସ ଇଅନ୍ତେ ।
ଅସୁଛି ରାତ୍ୟା. ଆସୁଛି ବନ୍ୟା. ଘୋଟୁଛି ଅକାଳର ଦୁର୍ଦ୍ଦିନ ମେଘ,
କିଏ ପଗୁଛୁ ଘର ଘର ବୁଲି ? କିଏ ବା ବୁଝୁଛି କାହାର ଦୁଃଖ ?
କୁଶଭଦ୍ରା ସଙ୍ଗେ ବ୍ରାହ୍ମଣୀ ନାଚଇ ଉଚ୍ଛ୍ୱସିତ ଜଳ ତରଙ୍ଗ ମେଲି,
ଦେଖ କାନ୍ଦୁ ଘର ଓଡ଼ିଆର ଶବ ଭାସେ ଚଉଦିଗେ ଅକାଳେ ଠେଲି ।
ତୁମଘର ଆଜି ଶଙ୍କ ଶଙ୍କ ଲୋକ ବର୍ଦ୍ଧଶାଳେ ରହି କାଟନ୍ତି କାଳ,
ନିଜ ପାଇଁ ଲୁହ ଦଳ ପାଇଁ କେହ, କାନ୍ଦୁଥିଲ ତାଙ୍କୁ ଦେଖି ବିକଳ ।
ତୁମ ନେତ୍ର କିନ୍ତୁ ମହୁଥିଲ ଝର ଉପର ଲୋକଙ୍କ ମରମ ଜଳ,
ଓଡ଼ିଶାର ଦୈନ୍ୟ, ଓଡ଼ିଆ ଯାତନା, ଘାରୁଥିଲ ତୁମ ପ୍ରାଣ ଦୟାଳୁ ।
ତୁମ ଲେଖନୀରୁ ଝରୁଥିଲ "ସ୍ୱଦେଶ ଚିନ୍ତାର" ନୀତିର ବୀଜ,
ଶୋଚନା ନ ଥିଲ ନିଜ ସୁଖ ପାଇଁ ପୁତ୍ର କନ୍ୟା କଥା ନ ଥିଲ ହେଜ ।
ଗର୍ଜିଥିଲ ତୁମେ ପିଞ୍ଜରୀ ମୁକୁନ୍ଦ, ଶାସନର ଦଣ୍ଡ ଧରିଣ କରେ,
ଭୁଲ କରିଥାନ୍ତି ଚପଳ ଜବର. ଭୋଗିଥାନ୍ତି ତୁମ ସଖା ହୋଇଦରେ ।
ତୁମେ ବର ନେଲ ଦେଶର ସେବା, ମଣିଲ ନରକୁ ଶ୍ରୀନାରାୟଣ.
ନତଜ ଧୂପ ଦୀପ ଢାଳିଲ ଶ୍ରଦ୍ଧାରେ ଯୋଗୁଛ ଜନତାର ଲୋକଙ୍କ ମାଝେ ।
ତୁମେ କହୁଥିଲ ଜୀବନ ନୁହଁଇ "ଭରଣ ପୋଷଣ ଦାନ ଓ ଦଣ୍ଡ"
"ଧର୍ମ ଯିଏ ନର କର୍ମ ଏକତାର ଜୀବନର ମାନଦଣ୍ଡ" ।
ତୁମ କାମ ନବ୍ୟ ଅସରା ବହୁଙ୍କ, ଭାବିଲ ତୁମେ ତ ଆସିବ ଫେରି,
ଏ ଦେଶେ ଜନମି ଏଇ ଜନ୍ମଭୂମି ଗଢ଼ି ଦେବ ନୂଆ ସ୍ୱପ୍ନେ ଅଦର ।
ଆପଦ ବିପଦ ମାଡ଼ିଆସୁଅଛି, ସମସ୍ତେ ଖୋଜନ୍ତି 'ଉତ୍କଳମଣି'
ତୁମେ ଏବେ ଦିନେ ଦେଲ ଉତ୍କଳକୁ ଲବ ? ଭୁଲିଗଲ ତୁମ ନିଜ ସରଣୀ
ଦିଅ ଏ ଅଶିଷ ନ ଫେରିବ ଯଦ, ନେତୃତ୍ୱ ତୁମର ସହଗ ସୀମା,
ଘୁଞ୍ଚିଯାଉ ଦେଶୁ ସକଳ ଯାତନା, ଉଷାର ଅଲୋକେ ଯୋଉଥିବ କାଳିମା ।

ଶ୍ରୀ କାହ୍ନୁଚରଣ ସାମଲ, ସୁନାବେଡ଼ା



Digitized by PPRACHIN, SOA

# ଅମର ଆତ୍ମା

ସମୟଙ୍କୁ ଚେଣ୍ଢା ଭଳି କିଏ ତା ବାନ୍ଧବ ?

ମହାବଳ ଅତି ଭୟଙ୍କର,
କାଳର ଶ୍ମଶାନ ପାଦେ
ସେ କେଉଁ ବିଚିତ୍ର ଦେଶେ—କେଉଁ ଅନ୍ଧାଲୋକ,
ମାୟାର ପ୍ରସଙ୍ଗ ଭୁଲି ହଜି ଶେଷ ଚାହାଡରେ,
ନିରୁଦ୍ଦିଷ୍ଟ ତୁମ ଆତ୍ମା ତୁମ ମୁଣ୍ଡ, ତୁମ ପଦଚିହ୍ନ,
କି ସ୍ରୋତ ଏ ସମୟର—ନୂତନ ବନ୍ଦରେ,
ଚିହ୍ନାରେ ଏ ଗଲା ପରେ—ଅସମ୍ଭବ ତୁମ ଏ'ଠି ଫେରା ପରିଚ୍ଛଦେ ।

ଏ କି ସେ ପ୍ରଳୟ ଯା'ରେ ତୁମେ ଖୋଜିଥିଲ,
ସଙ୍ଘାତ ବନଦେହେ ରହିଥିଲ କିଏ ଅଚା ମୃତ୍ୟୁ ସେ ସ୍ୱର ?
ଜଳିଲ ମାଟିର ଆତ୍ମା ଯେବେ କୁହ ଯନ୍ତ୍ରଣାରେ ନୁହେଁ,
ଜନତାର ମନ୍ଦିରୀରେ ଓଏସିସ କାହିଁ ଆଜି ?
କାହିଁ ଅବା ବକୁଳ ସଜଳ ସରାଗ ମାଧୁରୀ
ଏ'ଠି ହେଉ ଶୁଭିଯିବ ନୂଆ ଝଙ୍କଧ୍ୱନି ?

ସମୟର ମେଣ୍ଢା ଯେ କାଳଜୟୀ !
କ୍ଷୁଧାର୍ତ୍ତ ଓ ବଳ ତା ସ୍ୱର
ସ୍ତୁତି ଦେହେ ଏ କି ମାନଚିତ୍ର
ଅଲିଙ୍ଗନ ରକ୍ତିମା ରଥର ।

ସତ୍ୟ କୁମାର ମେହେର
ଅଲାପମା କାର୍ଯ୍ୟାଳୟ, ଭଂଜନଗର—୧

ପ୍ରେମ ପଥ ସହେ ସହି ସୁଖ ପାଏ ପ୍ରେମ ନ ଜାଣଇ କେବେ ଶୋଚନା
ପ୍ରିୟଜନେ ନୁହେଁ ପ୍ରେମିକ ବିମୁଖ ହେଲେ ହେଉ ପଛେ ଗୁରୁ ଗଞ୍ଜଣା ।

★★★

ମାନବ ଜୀବନ ନୁହଇ କେବଳ ବର୍ଷ ମାସ ଦିନ ଦଣ୍ଡ
ଧର୍ମେ କିଏ ନର କର୍ମ ଏକା ତା'ର ଜୀବନର ମାନଦଣ୍ଡ ।



Digitized by PPRACHIN, SOA

# ଗୋପବନ୍ଧୁ ସାହିତ୍ୟରେ ଆଧ୍ୟାତ୍ମିକତାର ବ୍ୟଞ୍ଜନା-

ଦୁଃଖ ଜର୍ଜରିତ ହାହୁତାଶମୟ ମାନବ ସମାଜର କରୁଣ କାହାଣୀ ଯା ହୃଦୟରେ ସୃଷ୍ଟି କରିଥିଲା ଅନେକ ବ୍ୟଥାର ରାଗିଣୀ, ଯାହାର ସୁକୋମଳ ଦରଦୀପ୍ରାଣରେ ସୃଷ୍ଟି କରିଥିଲା ଭିତର କମ୍ପନ, ଅଗଣିତ ନିରନ୍ନ ଜନତାର ବୁକୁଫଟା ହା ଅନ୍ନ କରୁଣ ଚିତ୍କାର ଯା ହୃଦୟର ବେଳାଭୂମିରେ ସୃଷ୍ଟି କରିଥିଲା ଅନେକ ଅଶ୍ରୁର ତରଙ୍ଗ ଓ ହୃଦୟରେ ଭରି ଦେଇଥିଲା କର୍ମ ଓ ଜାଗରଣର ଉଦ୍ଦୀପନା ଶକ୍ତି, ସେହି ହେଉଛନ୍ତି ଉତ୍କଳର ଚିର ଭଣ୍ଡାରକୁ ପୂର୍ଣ୍ଣ କରିଥିବା ଉତ୍କଳମଣି ଗୋପବନ୍ଧୁ... ଦୀନ ଦୁଃଖୀ ଦରିଦ୍ରର ଅନ୍ତର ବନ୍ଧୁ, ପ୍ରାଣର ଅକୁହା ଅଠବଗ । ଦେବତାର ସମସ୍ତ ଗୁଣ ହୃଦୟରେ ବହନ କରି ରକ୍ତମାଂସ ମଣିଷର ଅଳୀକ ରୂପ ନେଇ ସେ ସତ୍ୟବାଦୀ ଥାନା ଅନ୍ତର୍ଗତ ସୁଆଣ୍ଡୋ ପଲ୍ଲୀର ଏକ ଅଖ୍ୟାତ କୋଣରେ ଜନ୍ମଗ୍ରହଣ କରିଥିଲେ ୧୮୭୭ ମସିହା ଅକ୍ଟୋବର ନଅ ତାରିଖର ଏକ ଅପୂର୍ବ-ବେଳାରେ ।

ମହାକାଳର କରାଳଗର୍ଭରେ ବର୍ଷ ମାସ ଦିନ ଦଣ୍ଡ ସବୁକିଛି ଗ୍ରାସ ହୋଇଯାଏ ଏବଂ ସମୟର ଅପ୍ରତିହତ ନିରବଚ୍ଛିନ୍ନ ଗତିଧାରାର ପ୍ରଖର ସ୍ରୋତରେ ଏଇ କ୍ଷଣଭଙ୍ଗୁର ଜଡ ଜଗତର ସମସ୍ତ ଦୃଶ୍ୟବସ୍ତୁର ମୂଳ ସତ୍ତା ହରାଇବସେ । କିନ୍ତୁ ତ୍ୟାଗୀ- ନିସ୍ପୃହ, ଦେଶସେବକ ମହାନ୍ ତପସ୍ୱୀଙ୍କର ନିଷ୍କପ ଅମର ଆତ୍ମାର ତେଜୋଦୀପ୍ତ ସମୁଜ୍ଜ୍ୱଳ କାନ୍ତିକଳାପ ଚିରକାଳ ଦେଶ ଓ ଜାତିର ପ୍ରତ୍ୟେକ ଅଣୁପରମାଣୁରେ ପରିବ୍ୟାପ୍ତ ହୋଇ ସୃଷ୍ଟିକୁ ସଦାସର୍ବଦା ଉଦ୍ଭାସିତ କରେ । ଏହି ଦୃଷ୍ଟିରୁ ବିଚାର କଲେ ଉତ୍କଳମଣି ଗୋପବନ୍ଧୁ ଥିଲେ ମହାମାନବ—ଧର୍ମ, କୀର୍ତ୍ତି, ଦୟା, ମାନବିକତା ଆଧ୍ୟାତ୍ମିକତାର ଶିଳ୍ପଭାସ୍କର ଏବଂ ସେ ସାଧକଙ୍କର ତପସ୍ୟାରତ ଜୀବନର ଗତିଧାରା ଅଗଣିତ ମାନବର ସମାଜକୁ ପ୍ରଭାବିତ କରିପାରିଥିଲା । ତେଣୁ ଦେବୋପମ ଗୋପବନ୍ଧୁଙ୍କର ସାତ୍ତ୍ୱିକ ହୃଦୟରେ ଯେଉଁ ମହାନ୍ ବାଣୀ ପ୍ରତିଫଳିତ ହୋଇଥିଲା—ତାହା ତାଙ୍କର ବ୍ୟକ୍ତିଗତ କଥା ନୁହେଁ—ତାହା ଥିଲା ନିର୍ଦ୍ଦିଷ୍ଟ ରୂପେ ମଙ୍ଗଳମୟଙ୍କ ଆଦେଶ । ସେହି ଗୋପବନ୍ଧୁଙ୍କ ଦ୍ୱାରା ରଚିତ କାବ୍ୟ କବିତାରେ ଆଧ୍ୟାତ୍ମିକବାଦ କିପରି ଥିଲା ତାହା ଆଲୋଚନା କରିବା ପୂର୍ବରୁ ଗୋପବନ୍ଧୁ ପୂର୍ବବର୍ତ୍ତୀ ସାହିତ୍ୟର ଅବସ୍ଥା କିପରି ଥିଲା ତାହା ବର୍ତ୍ତମାନ ଆଲୋଚନାର ବିଷୟ ।

ସତ୍ୟବାଦୀ ଯୁଗର ଆରମ୍ଭ ପୂର୍ବରୁ ରାଧାନାଥ ସାହିତ୍ୟ ସମାଜରେ ବହୁ ବିଶୃଙ୍ଖଳା ସୃଷ୍ଟି କରିଥିଲା । ତେଣୁ କବିବର ରାଧାନାଥ ତାଙ୍କ ଜୀବଦ୍ଦଶାରେ ବହୁ କଟୂକ୍ତିର ସମ୍ମୁଖୀନ ହୋଇଥିଲେ । ତାଙ୍କ କାବ୍ୟ-ଗୁଡ଼ିକର କଥାବସ୍ତୁରେ ବିମଳ ପ୍ରେମର ଶିଖର ଅଭାବ ଏହି ସମାଲୋଚନାର ମୂଳ କାରଣ । ରାଧାନାଥଙ୍କର ଲେଖାବଳୀ ଉପରେ ମନ୍ତବ୍ୟ ଦେବାକୁ ଯାଇ ବିଶ୍ୱନାଥ କର ଲେଖିଥିଲେ, "ଦୁର୍ଭାଗ୍ୟର ବିଷୟ ଏପର୍ଯ୍ୟନ୍ତ ଆମ୍ଭେମାନେ ତାଙ୍କଠାରୁ ଗୋଟିଏ



Digitized by PPRACHIN, SOA

ଉନ୍ନତ ପ୍ରେମଚିତ୍ର ପାଇପାରିନାହିଁ । ବରଂ ବ୍ୟଥିତ ଚିତ୍ତରେ କହୁଛନ୍ତି ଯେ ତାଙ୍କର ପ୍ରାୟ ସମସ୍ତ ନାୟକ-ନାୟିକାଙ୍କ ଚିତ୍ରକୁ ପାଶ୍ଚାତ୍ୟ ସୌନ୍ଦର୍ଯ୍ୟ ଓ ଇନ୍ଦ୍ରିୟ ସୁଖରେ ଅଭିନିବିଷ୍ଟ କରିପକାଇଛନ୍ତି ।" ରାଧାନାଥ ପାର୍ବତୀ କାବ୍ୟରେ ପିତା ଓ ପୁତ୍ରୀର ପ୍ରଣୟ କାହାଣୀକୁ ଯେପରି ଭାବରେ ବର୍ଣ୍ଣନା କରିଛନ୍ତି ତାହା ଅତ୍ୟନ୍ତ ଘୃଣ୍ୟ ଏଣୁ ପରିତ୍ୟଜ୍ୟ । କବିବର ରାଧାନାଥ ତାଙ୍କର କାବ୍ୟକବିତାରେ ଏ ଜାତିର ଧର୍ମର ମୂଳରେ କୁଠାରଘାତ କରିଥିବାରୁ ତାଙ୍କୁ ଅନେକ ସମାଲୋଚନାର ସମ୍ମୁଖୀନ ହେବାକୁ ପଡ଼ିଛି । ରାଧାନାଥଙ୍କ ପରେ ଏ ଦେଶରେ ଜାତୀୟ ଜାଗରଣର ଏକ ଉନ୍ମାଦନା ଖେଳିଯାଇଥିଲା । ପଣ୍ଡିତ ଗୋପବନ୍ଧୁ ସ୍କୁଲରେ ପଢ଼ିବା ସମୟରେ ରାଧାନାଥଙ୍କୁ ସମାଲୋଚନା କରି ଇନ୍ଦ୍ରଧନୁରେ ଏକ କବିତା ଲେଖିଥିଲେ । ସେ କବିତା ଲେଖିବା ଫଳରେ ତାଙ୍କୁ ଦଣ୍ଡିତ ହେବାକୁ ମଧ୍ୟ ପଡ଼ିଥିଲା । କିନ୍ତୁ ସେହି ଗୋପବନ୍ଧୁ ଯେଉଁବେଳେ ବାସ୍ତବ କର୍ମକ୍ଷେତ୍ରରେ ପ୍ରବେଶ କଲେ, ସେତେବେଳେ ସେ ନିର୍ଭୀକଭାବରେ ରାଧାନାଥ ସାହିତ୍ୟରେ ଦେଖାଦେଇଥିବା ଅଜାତୀୟ ମନୋଭାବକୁ ଘୃଣା କରିଛନ୍ତି । ରାଧାନାଥଙ୍କର କାବ୍ୟକବିତାକୁ ନିନ୍ଦା କରି ସେ ଜାତୀୟତା ଓ ଧର୍ମଭାବମୂଳକ କବିତା ରଚନା କଲେ । ତାଙ୍କର ପ୍ରତ୍ୟେକ କବିତାରେ ଧର୍ମର ଅପୂର୍ବ ସ୍ଫୁରଣ ଦେଖିବାକୁ ମିଳେ । ଅବକାଶ ଚିନ୍ତାଧାରାର ମୁଖବନ୍ଧରେ ଶ୍ରୀଯୁକ୍ତ ରାଧାନାଥ ରଥ ଲେଖିଛନ୍ତି, "ଈଶ୍ୱର ଭକ୍ତି ଗୋପବନ୍ଧୁଙ୍କ ସକଳ କାର୍ଯ୍ୟ ଚିନ୍ତା ଓ କବିତା ଭିତରେ ଅନ୍ତଃଧାରା ରୂପେ ରହି ତାଙ୍କୁ ଜୀବନ୍ତ ରଖିଛି । ତାଙ୍କର ସକଳ କବିତାରେ ସେ ଭକ୍ତ ପଦକୁ ସ୍ମରଣ କରିଛନ୍ତି । ଯେ ଭକ୍ତ ଭାବର ଉପାସନାରେ ଆତ୍ମବିସର୍ଜନ କରି ଦେଇଛନ୍ତି ।" ଏହି ଉକ୍ତିଟି ଗୋପବନ୍ଧୁଙ୍କ ଜୀବନ କାଳରେ ନିଶ୍ଚିତ ସତ୍ୟର ରୂପ ଧାରଣ କରିଥିଲା । ବାଲ୍ୟକାଳରୁ ତାଙ୍କ ମନ ମଧ୍ୟରେ ଆଧ୍ୟାତ୍ମିକ ଚିନ୍ତାଧାରା ଦେଖାଦେଇଥିଲା । ବାଲ୍ୟକାଳରେ ସେ ତାଙ୍କ ପିତାମହଙ୍କ ଭାଗବତ ଘରେ "ଭାଗବତ ଟୁଙ୍ଗି" ବସିବା ସମୟରେ ଉପବାସ ରହି ଭାଗବତ ପାଠ କରୁଥିଲେ । ଜଗନ୍ନାଥ ଦାସଙ୍କର ରଚିତ ଭାଗବତ ତାଙ୍କ ବାଲ୍ୟ ଜୀବନରୁ ତାଙ୍କ ଉପରେ ବିଶେଷ ଭାବରେ ପ୍ରଭାବ ପକାଇଥିଲା । ତେଣୁ ତାଙ୍କର କବିତାମାନଙ୍କରେ ଭକ୍ତି ପ୍ରେମର ବହୁ ଉଦାହରଣ ଦେଖିବାକୁ ମିଳେ । ନିତ୍ୟଧାମ ନୀଳାଚଳରେ କବି ଲେଖିଛନ୍ତି—

"ନୀଳଚକ୍ର ତଳେ ଯେ କରିବ ବାସ
ଯେ ଦେଖିବ ନୀଳାଚଳେ ନିତ୍ୟରାସ
ବୋଲି ହରି ହରି
କେ ପ୍ରେମ ଭିକାରୀ
ପରଶ ପୁଲକେ ତେଜିବ ନିଶ୍ୱାସ ?"

ଗୋପବନ୍ଧୁଙ୍କ ରଚିତ ଧର୍ମପଦ କବିତାରେ ଧର୍ମପଦର ଅସାଧ୍ୟ ସାଧନ ଗୋପବନ୍ଧୁଙ୍କ ଅଧ୍ୟାତ୍ମ ପ୍ରେରଣା ଓ ମାନବିକତାକୁ ଜାଗ୍ରତ କରିଅଛି । ତାଙ୍କର ତ୍ୟାଗପୂତ ମହାନ ଜୀବନକୁ ଆହୁରି ମହୀୟାନ ଓ ଶକ୍ତିଶାଳୀ କରିଅଛି । ସମଗ୍ର ଶିଳ୍ପୀକୁଳର ମଙ୍ଗଳ ସାଧନ ନିମନ୍ତେ ଧର୍ମପଦ ତାର ସକଳ ସୁଖ ସମ୍ଭୋଗକୁ ଜଳାଞ୍ଜଳି ଦେଇ ଆତ୍ମୋତ୍ସର୍ଗ କରିଛି । ନିଜ ଜୀବନର ବିନିମୟରେ ସେ ବାରଶହ ବଢ଼େଇଙ୍କର ନିଜ ଜାତିଭାଇଙ୍କର ଜୀବନ ରକ୍ଷା କରିଛି । ସେ ନିଜକୁ ବ୍ୟକ୍ତିଗତ ଚରିତ୍ର ସ୍ୱାର୍ଥରୁ ସମ୍ପୂର୍ଣ୍ଣ ମୁକ୍ତ କରି ନିଜକୁ ଭଗବତ୍ ପ୍ରୀତିରେ ଉଦ୍ଭାସିତ କରିଛି । ଓଡ଼ିଶାର ଅନନ୍ୟ କୀର୍ତ୍ତି କୋଣାର୍କ ମନ୍ଦିରର ନିର୍ମାଣ ମହିମା ଜଡ଼ିତ ଥିବା ଏହି ଜନଶ୍ରୁତି (ବାରଶହ ବଢ଼େଇରେ ଦାସୁ କି ପୁଅର ଦାସ୍ୟ)କୁ ଅବଲମ୍ବନ କରି ଏହା ପ୍ରବନ୍ଧ ହେଉ କବିତା ରଚନା କରି ନ ଥିଲେ କିମ୍ବା ରଚନା କରି ମଧ୍ୟ ଗୋପବନ୍ଧୁଙ୍କ କବିତା ପରି ଜୀବନ୍ତ ଚିତ୍ର ସଞ୍ଚାର କରିପାରି ନ ଥିଲେ । ଧର୍ମପଦ କବିତାରେ ଅତମ ଯେପରି ଦେଖିବାକୁ ପାଇଁ ଗୋପବନ୍ଧୁଙ୍କୁ ମନେହୁଏ ଧର୍ମପଦର



Digitized by PPRACHIN, SOA

ଆଦର୍ଶ ଯେପରି ଗୋପବନ୍ଧୁଙ୍କ ଜୀବନର ଆଦର୍ଶ । ଧର୍ମପଦ ଯେପରି ନିଜ ଜୀବନର ବିନିମୟରେ ସ୍ୱଜାତି ଭାଇଙ୍କର ଜୀବନ ରକ୍ଷା କରି ପାରିଥିଲା, ଗୋପବନ୍ଧୁ ସେହିପରି ନିଜ ଜୀବନ ବିନିମୟରେ ଜାତିଭାଇଙ୍କର ମଙ୍ଗଳକାମନା କରୁଥିଲେ । ସେ ନିଜ ଭିତରେ ଦେଖୁଥିଲେ ଯେପରି ଅନନ୍ୟ ଆଖିର ଲୁହ । ଗୋପବନ୍ଧୁ ଯେପରି ଆକୁଳ କଣ୍ଠରେ କହିଛନ୍ତି 'ଯେତେବେଳେ ଯାହା ଚାହିଁଛ ହେ ପ୍ରଭୁ, ସେତେବେଳେ ତାହା ଦେଇଛ' । ଧର୍ମପଦ ସେହିପରି ମନ୍ଦିର ଚୂଡ଼ାରୁ ଲମ୍ଫ ପ୍ରଦାନ କଲାବେଳେ କାତର କଣ୍ଠରେ ଭଗବାନଙ୍କୁ ଡାକି କହିଛି—

"ମୋ ହୃଦୟସ୍ୱାମୀ ତୁମ୍ଭେ ଅନ୍ତର୍ଯ୍ୟାମୀ
ଦେଖାଇଛ ଯାହା ଥରେ
ସେ ଅମୃତ ଗତି ଦିଅ ପ୍ରାଣେଶ
ଜନ୍ମ ଜନ୍ମାନ୍ତ ହରେ ।"

ନଚିକେତା ଉପାଖ୍ୟାନରେ ମଧ୍ୟ କବିଙ୍କର ଜୀବନ-ସାଧନା ମନ୍ତ୍ର ପ୍ରତିଫଳିତ ହୋଇଛି । ଦେଶ ଓ ଦଶର ମଙ୍ଗଳ କାମନା ନିମନ୍ତେ ଧର୍ମପଦ ଯେପରି ପ୍ରାଣ ବିସର୍ଜନ କରିଥିଲା, ନଚିକେତା ମଧ୍ୟ ପିତୃ ଆଦେଶରେ ଯମ ପାଖକୁ ଯାଇ ବ୍ରହ୍ମୋପଦେଶ ଶ୍ରବଣ କରି ଦେଶବାସୀଙ୍କର ମଙ୍ଗଳ ନିମନ୍ତେ ପ୍ରଚାର କରିଥିଲା । ନିର୍ଭୀକ ବଚନରେ ନଚିକେତା କହିଥିଲା ଧନ-ଜନ-ଗୋପଲକ୍ଷ୍ମୀ ଦାସୀ ପରିବାରରେ ମୋର ପ୍ରୟୋଜନ ନାହିଁ । ମୋର ଦରକାର ବ୍ରହ୍ମତତ୍ତ୍ୱ ଓ ଆତ୍ମଜ୍ଞାନ । ଯେଉଁ ଜ୍ଞାନ ଦ୍ୱାରା ମୁଁ ଦେଶବାସୀଙ୍କୁ ସ୍ୱର୍ଗର ନନ୍ଦନକାନନରେ ପରିଣତ କରିପାରିବି ମୋର ସେହି ଜ୍ଞାନ ଦରକାର । ଏ ବର ଛଡ଼ା ମୋର ଅନ୍ୟ କୌଣସି ବର କାମ୍ୟ ନୁହେଁ ।

ଗୋପବନ୍ଧୁ ଥିଲେ ସତ୍ୟ, ଶିବ ଓ ସୁନ୍ଦରର ଉପାସକ, ତଥା ଆଧ୍ୟାତ୍ମିକତାର, ଧର୍ମର ସୁଦୃଢ଼ ଭିତ୍ତି ଉପରେ ପ୍ରତିଷ୍ଠିତ ଆର୍ଯ୍ୟ ସଂସ୍କୃତି ଓ ଜାତୀୟ ସଂସ୍କୃତିର ପ୍ରାଣବନ୍ତ ପ୍ରତୀକ । ଜୀବନରେ ନାନା ଝଡ଼ ଝଞ୍ଜା ଓ ବିକ୍ଷୋଭ ମଧ୍ୟରେ କାରାଗାରରେ ଅବଦ୍ଧ ଥାଇ ମଧ୍ୟ ଅନ୍ତର ମଧ୍ୟରେ ଈଶ୍ୱର ସତ୍ତା ଅନୁଭବ କରିବା ଥିଲା ତାଙ୍କ ସର୍ବବ୍ୟାପକତ୍ୱ ଓ ମହାନୁଭବତା ଏହାର ସୂଚନା ମିଳେ ତାଙ୍କର 'ସାନ୍ଧ୍ୟଭାବନା' କବିତାରେ । ଜୀବନର ଏହି ଅମୃତର ସନ୍ଧାନ ମଧ୍ୟ ଆମ୍ଭେମାନେ ତାଙ୍କର ଯୌବନରେ ରଚିତ 'ଶିବବ୍ରତ' କବିତାରେ ଦେଖିବାକୁ ପାଉ ଯଥା—

"ସମସ୍ତ ଜୀବନ କର ଏକ ଶିବବ୍ରତ,
ଅନ୍ଧାରେ ନ ଛାଡ଼ ପଥ ହେ ସରଗ ଯାତ୍ରୀ ।"

ଶେଷ ଜୀବନରେ ବନ୍ଦୀ-ପ୍ରାର୍ଥନାରେ ତାଙ୍କର ଯେଉଁ ଶୁଦ୍ଧପୂତ କାମନା, କାରାଗାରରେ ଅବଦ୍ଧ ଥାଇ ମଧ୍ୟ ଈଶ୍ୱରଙ୍କଠାରେ ଯେଉଁ ବିନମ୍ର ପ୍ରଣତି ସେ ନିବେଦନ କରିଥିଲେ । ଅନ୍ତର ମଧ୍ୟରେ ଈଶ୍ୱରଙ୍କର ଅବସ୍ଥାନ ତାଙ୍କର ସର୍ବବ୍ୟାପକତ୍ୱ ଏବଂ ଅନନ୍ତ ପ୍ରେମଧାରାର ଏ ଯେଉଁ ଉପଲବ୍ଧିତାର ଅଭିବ୍ୟକ୍ତ ଆମ୍ଭେମାନେ ତାଙ୍କ ବନ୍ଦୀର ଆତ୍ମକଥାରେ ଦେଖିବାକୁ ପାଉ—

"ଯା ଜୀବନେ ଗତି ତତ୍ତ୍ୱ ଅଭିମୁଖୀ
ସେହି ଏକା କୃତୀ, ସେହି ଏକା ସୁଖୀ
ତତ୍ତ୍ୱର ସାଧନେ କୃତକୃତ୍ୟ ଜନ
ଲଭଇ ମରଣେ ଅମୃତ ଜୀବନ
ସତ୍ୟ ସନାତନ ପ୍ରଭୁ ଭଗବାନ
ଏ ଭାବେ କର ମୋ ହୃଦ ବଳୀୟାନ ।"

ଭାଗବତର ଆଦର୍ଶରେ ନିଜକୁ ଅନୁପ୍ରାଣିତ କରି ଅବାଲ୍ୟରୁ ଗୋପବନ୍ଧୁ ନିଜକୁ ଏପରି ଶୁଦ୍ଧ ସୁବର୍ଣ୍ଣ-ପରି ଗଢ଼ିଥିଲେ । ଜୀବନର ନିରାଡ଼ମ୍ବର, ସରଳତା, ବିନମ୍ରତା ଏବଂ ଦେଶ ସେବା ମନୋଭାବ ସେ ଭାଗବତରୁ ହିଁ ଶିକ୍ଷାକରିଥିଲେ । ତେଣୁ ସେ ଯେତେବେଳେ ଅସହଯୋଗ ଆନ୍ଦୋଳନର କର୍ଣ୍ଣଧାର ହୋଇ ପ୍ରତ୍ୟେକ ଦେଶବାସୀର ଭକ୍ତିଅର୍ଘ୍ୟ ଦେଇ ପୂଜା କରୁଥିଲେ-ସେତେବେଳେ ମଧ୍ୟ ସେବା ମନୋଭାବ ପ୍ରକାଶ କରି ଦେଶବାସୀଙ୍କୁ ଶୁଣାଇଛନ୍ତି—



Digitized by PPRACHIN, SOA

ନ ଅଟକେ କର୍ମ ନେତାର ଅଭାବେ
ଧର୍ମନାବ ଚଳେ ଧର୍ମର ପ୍ରଭାବେ ।
ବରଂ ଶେଷେ ଉତ୍କଳେ ନାହିଁ ପ୍ରୟୋଜନ
ଉତ୍କଳର ନେତା ନିଜେ ନାରାୟଣ ।

ସଂସାରର ଯାବତୀୟ କର୍ମ ଜଞ୍ଜାଳରେ ବୁଡ଼ିରହି ମଧ୍ୟ ତାଙ୍କର ଭଗବତ ପ୍ରୀତି ବାସ୍ତବରେ ଅଲୌକିକ । ଭଗବତ୍ ପ୍ରେମର ସ୍ୱର୍ଗୀୟ ସଙ୍ଗୀତ ପ୍ରବାହ ତାଙ୍କ ପ୍ରାଣକୁ ଅହରହ ପୁଲକିତ କରୁଥିଲା । ତାଙ୍କର ବ୍ୟକ୍ତିଗତ ଆତ୍ମା ନିରନ୍ତର ଯେପରି ସେହି ଅନନ୍ତ ପରମସୁନ୍ଦରଙ୍କ ନିମିତ୍ତ ଅଧୀର ହୋଇ ଉଠୁଥିଲା । ସେ 'କାରାକାବ୍ୟ ତାରେ' ଲେଖିଛନ୍ତି—

"ମିଶେ ସରିତ ଯଥା ମହାସାଗରେ
ଜଡ଼େ ବଲ୍ଲରୀ ଯଥା ତରୁଅଙ୍ଗରେ
ନୀଳ ନୀରଦେ ଯଥା ଖେଳେ ଚପଳା
ନିର୍ଝର ଧାରା ଯଥା ଗିରି ମେଖଳା ।
ନାଚେ ଲହରୀ ଯଥା ଶଶୀ ପରଶେ
ନଳିନୀ ଯଥା ରବିକରେ ହରଷେ
ମିଳାଇ ପ୍ରାଣ ତଥା ପ୍ରାଣେଶ ପଦେ
ନାଚିବ ବିଶ୍ୱପ୍ରେମେ ପରମାନନ୍ଦେ ।"

ବାସ୍ତବରେ ଗୋପବନ୍ଧୁଙ୍କର ସମଗ୍ର ଜୀବନ ଏକ ଗଭୀର ଅନ୍ତଃଚେତନା ଦ୍ୱାରା ପରିଚାଳିତ ହୋଇଥିଲା ଏବଂ ଏସବୁ ଦେଖିଲେ ମନେହୁଏ ଯେପରି ସେ ଭଗବାନଙ୍କର ଏକ ଅମର ଉଦ୍ଦେଶ୍ୟ ନେଇ ଜନ୍ମଗ୍ରହଣ କରିଥିଲେ ।

ମିନତି ମହାପାତ୍ର
ସୁନାବେଡ଼ା—୨



# ଗୋପବନ୍ଧୁ ଓ ଜାତୀୟତା

ମହାକାଳର ମହାସ୍ରୋତରେ ମହାପୁରୁଷମାନଙ୍କ ମହାନ ଜୀବନ ମହାତୀର୍ଥରେ ବିଲୀନ ହୋଇ ଯାଇଛନ୍ତି । ସେମାନେ କାଳଜୟୀ ଚିରଂଜୀବୀ କୀର୍ତ୍ତି-କେତନ ମହାକାଳର ସ୍ୱର୍ଣ୍ଣ ରାଜ ପ୍ରାସାଦରେ ଉଡ଼ାଇ ବିଶ୍ୱଜନ ପ୍ରୀତି ମନ୍ଦାକିନୀର ମହାକରୁଣା ଧାରାରେ ପ୍ଲାବିତ କରି ଦିଅନ୍ତି ସମଗ୍ର ବିଶ୍ୱମାନବର ଲୀଳାଭୂମିକୁ । ଯୁଗ ପରେ ଯୁଗ ବିତିଯାଏ, କିନ୍ତୁ ଯୁଗ ପୁରୁଷର ଯୁଗ ଚେତନା ଚିରଦିନ ରହେ ଯୁଗ ଯୁଗ ଧରି । ସର୍ବକାଳ କାଳଜୟୀ ପ୍ରଣମ୍ୟ ହୁଏ ମହାପୁରୁଷମାନଙ୍କର ଜୀବନ ଦର୍ଶନର ଅମ୍ଳାନ ଭାବ ସଙ୍ଗୀତ । ଯୁଗ ଭୁଲି ପାରେନା ସେମାନଙ୍କୁ ତଥା ସେମାନଙ୍କ ତ୍ୟାଗମୟ ଜୀବନର ଇତିବୃତ୍ତକୁ । ସେହିମାନଙ୍କ ମଧ୍ୟରୁ ଅମର ପୁଣ୍ୟଶ୍ଳୋକ ଗୋପବନ୍ଧୁ ଅନ୍ୟତମ ।

ଅମର ପୁଣ୍ୟସ୍ଥାନ ତଥା ଜନ୍ମଭୂମି ଉତ୍କଳ ଅନ୍ତର୍ଗତ ପୁରୀର ସୁଆଣ୍ଡୋ ନାମକ ଏକ ଅଖ୍ୟାତ ପଲ୍ଲୀରେ ତା ୯-୧୦-୧୮୭୭ ରେ ହୋଇଥିଲା ବିଶ୍ୱ ପ୍ରାଣ ଗୋପବନ୍ଧୁଙ୍କର ଆବିର୍ଭାବ । ତାଙ୍କର ସମଗ୍ର ଜୀବନକୁ ବିଶ୍ୱମାନବ ଜାତିର ସେବାରେ କରିଥିଲେ ନିୟୋଜିତ । କଥା ଓ କର୍ମ, ଏବଂ କଳ୍ପନା ଓ ବାସ୍ତବତାର ସଂଯୋଗକୁ କେନ୍ଦ୍ର କରି ସେ କରିଥିଲେ ଦୀନ ଦରିଦ୍ରର ସେବା । ଦୀନ, ଦରିଦ୍ର, ପତିତ ନିଷ୍ପେଷିତ ଜନତାର ବୁକୁର କ୍ରନ୍ଦନ ତଥା ପ୍ରାଣର ଆର୍ତ୍ତ ଚିତ୍କାର ତାଙ୍କର ନୟନ ଯୁଗଳରେ ସୃଷ୍ଟି କରିଥିଲା ଲୁହର ସାଗର । ଇଂରେଜଙ୍କ ଦ୍ୱାରା ଶାସିତ ଅତ୍ୟାଚାରିତ, ଶୋଷିତ, ପଦଦଳିତ ଜନତା ଜୀବନର ଉତ୍ତପ୍ତ ଶଯ୍ୟାରେ ଶୀତଳତାର ପ୍ରଲେପନ ନିମନ୍ତେ



Digitized by PPRACHIN, SOA

ସେ ଥିଲେ ତାଙ୍କର ଦୃଷ୍ଟାନ୍ତ । ବାସ୍ତବିକ ସମଗ୍ର ଉତ୍କଳ ତଥା ଭାରତ ତଥା ବିଶ୍ୱଜଗତର ଦ୍ୱାର ଦେଶରେ ତାଙ୍କର ଉଦାହରଣ ଥିଲା ଅଦ୍ଭୁତ । ପ୍ରକୃତରେ ତାଙ୍କ ଜୀବନ ଗୀତାର ପ୍ରତ୍ୟେକ ପୃଷ୍ଠା ଥିଲା ବିଶ୍ୱଜନ ପ୍ରୀତି ମମତାର ଏକ ଅଖଣ୍ଡ ଭାବାବେଗ । ତାଙ୍କ ପାଖରେ ନ ଥିଲା ଭେଦାଭେଦ ମନୋଭାବ ତଥା ଜାତି ବର୍ଣ୍ଣ ଧର୍ମର ସଙ୍କୀର୍ଣ୍ଣତା । ସାର୍ବଜନୀନ ମମତା ଥିଲା ତାଙ୍କର ଚରମ ମାନବିକତାର ରୂପ । ତାଙ୍କର ଓଡ଼ିଶାର ଜାତୀୟ ଜନ୍ମଭୂମି ନିମନ୍ତେ ରହିଛି ଅତୁଳନୀୟ ଅବଦାନ, ଯଦ୍ୱାରା ସେ ଆଜି ବି ଆମ ପାଖରେ ହୋଇଛନ୍ତି ଉଜ୍ଜୀବିତ ତଥା ପ୍ରତିଷ୍ଠିତ । ତାଙ୍କର ମୌଳିକତା ବିଭିନ୍ନ ବିଭାଗର ଆଲୋଚନା ଚିନ୍ତନଶୀଳତା ତଥା ଦିଗ୍‌ଦର୍ଶନ ଆଦି ସତ୍ୟାନୁସନ୍ଧାନ ଦୃଷ୍ଟିକୋଣ ଓଡ଼ିଶାର ଜାତିତତ୍ତ୍ୱ ଉପରେ ହୋଇଛି ପ୍ରତିପାଦିତ ।

ଭାରତୀୟ ଜାତିତତ୍ତ୍ୱ ତଥ୍ୟ ତଥା ଆଦି ପରିବ୍ରାଜକ, ବ୍ୟବସାୟୀ ପ୍ରତିଷ୍ଠାନର ପ୍ରତିନିଧି, ଭୂତତ୍ତ୍ୱବିତ୍, ନୃତତ୍ତ୍ୱବିତ୍ ଆଦି ବୈଜ୍ଞାନିକମାନଙ୍କର ଲେଖାବଳୀ ସଂଗୃହୀତ କରିବାରେ ଉପୁଜିଥିଲା ବହୁ ବାଧାବିଘ୍ନ ତଥା ଘୋର ସଙ୍କଟ । କାରଣ ଦେଶରେ ଦେଖା ଦେଇଥିଲା ଓଡ଼ିଆ ବିପ୍ଳବ, ପ୍ରତିବିପ୍ଳବ ଓ ଖଣ୍ଡ ବିପ୍ଳବ । ଫଳତଃ ଇଂରେଜମାନେ ନିଜର ଶାସନକୁ ବଳବତ୍ତର କରିବା ପାଇଁ ଜନଗଣନା ମାଧ୍ୟମରେ କରିଥିଲେ ଅପ୍ରାଣ ଚେଷ୍ଟା । ୧୯୦୧ ଖ୍ରୀଷ୍ଟାବ୍ଦରେ ହୋଇଥିବା ଜନଗଣନାର ବିବରଣୀ ୧୯୦୩ ଖ୍ରୀଷ୍ଟାବ୍ଦରେ ହୋଇଥିଲା ପ୍ରକାଶିତ ।

ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ହାମିଲଟନ ବୁକାନ, ମୋଟଣ୍ଟ ଆଦିଙ୍କ ବିବରଣୀମୂଳକ ଲେଖା ତଥା ଜାତିତତ୍ତ୍ୱ ଏବଂ ମାର୍ଟିନ ଓ ଷ୍ଟାର୍ଲିଂ ସାହେବ ପ୍ରଭୃତିଙ୍କର ଉତ୍କଳୀୟ ଜାତି ବିଷୟରେ ସମ୍ୟକ ସୂଚନା ଆଦି ଉତ୍କଳମଣି ଗୋପବନ୍ଧୁଙ୍କ ସତ୍ୟବାଦୀ ପତ୍ରିକାରେ ହୋଇଥିଲା ପ୍ରକାଶିତ । ଏ ସବୁ ପାଠ କରିବାର ସୁଯୋଗ ଲଭିଥିଲେ ଅନାଥବନ୍ଧୁ ଗୋପବନ୍ଧୁ । ଓଡ଼ିଶାରେ ଅଲେଖଚନ୍ଦ୍ର ମନୁସଂହିତା, ପୁରାଣର ସଂହିତା ପଣ୍ଡିତ ସର୍ବସ୍ୱ, ପ୍ରବେଶିକା ସର୍ବସ୍ୱ, ଗଦାଧର ପଦ୍ଧତି ଆଦି ସ୍ମୃତିଗ୍ରନ୍ଥ ଓ ଧର୍ମଶାସ୍ତ୍ରମାନ ଆମକୁ ଦିଏ ଜାତିତତ୍ତ୍ୱର ସମ୍ୟକ ବିବରଣୀ । ଏହି ସବୁକୁ ଅଧ୍ୟୟନ କରି ଗୋପବନ୍ଧୁ ଗ୍ରନ୍ଥସମୂହର ଉଦ୍ଦେଶ୍ୟସହ ବାସ୍ତବତା ଦୃଷ୍ଟିକୋଣ ନେଇ କରିଥିବା ବ୍ୟାଖ୍ୟାକୁ ବଳାଇ ଥିଲେ ପ୍ରଗାଢ଼ ଉଦ୍ୟମ । ଗାନ୍ଧୀଜୀଙ୍କ ସହ ଜନମାନଙ୍କ ମଧ୍ୟରେ ଓ ହିନ୍ଦୁ ମୁସଲମାନମାନଙ୍କ ପାରସ୍ପରିକ ସମ୍ପର୍କ ବିଷୟରେ ଚିନ୍ତାର ଥିଲା ପରିଦ୍ରଷ୍ଟା । ଗାନ୍ଧୀଜୀଙ୍କର ବହୁପୂର୍ବରୁ ଯୁଗପୁରୁଷ ତଥା ପଣ୍ଡିତ ଗୋପବନ୍ଧୁ ଏହାକୁ ଭାବିଥିଲେ ହୃଦୟଙ୍ଗମ ଏବଂ ନିଜର କାର୍ଯ୍ୟାବଳୀକୁ କରିଥିଲେ ସ୍ୱୀକୃତ ତଥା ଏକତା ସ୍ଥାପନ ଦ୍ୱାରା ଜାତି ବର୍ଣ୍ଣ ନିର୍ବିଶେଷରେ କରିଥିଲେ ଆନ୍ଦୋଳନର ସୂତ୍ରପାତ ।

ସମସ୍ତ ଜାତିତତ୍ତ୍ୱ ଆଲୋଚନାର ମୂଳକାରଣ ଓ ପ୍ରେରଣାଦାତା ଆମର ଏହି ପୁଣ୍ୟପିତା, ଯୁଗଯାଣ ତଥା ଦରିଦ୍ରର ସଖା ଗୋପବନ୍ଧୁ । ସର୍ବଦା ସେ ଦେଶ ଓ ବିଦେଶରେ ଅନୁନ୍ନତ ଜାତିମାନଙ୍କ ଦୁର୍ଦ୍ଦଶାର କାରଣ ରୂପେ ବିଦେଶୀ ଶାସନ ଓ ଶାସକମାନଙ୍କ ପ୍ରତ୍ୟକ୍ଷ ତଥା ପରୋକ୍ଷ ଭାବରେ ଦାୟୀ ବୋଲି ଦେଇଛନ୍ତି ସୂଚନା । ତା'ସଙ୍ଗେ ସ୍ୱାଧୀନ ପୃଥିବୀରେ ବ୍ୟାପୀ ହୋଇଥିବା ବର୍ଣ୍ଣ ବୈଷମ୍ୟ ଭେଦଭାବର ସର୍ଜନା କରି ବିଦେଶୀମାନଙ୍କ ଦ୍ୱାରା ଆରମ୍ଭ ହୋଇ ଆମର ନୈତିକ ତଥା ଦେଶୀୟ ଐକ୍ୟକୁ ବ୍ୟାହତ କରୁଥିବା କଥା ବି ଗୋପବନ୍ଧୁ କହିଛନ୍ତି ପ୍ରଭୃତି । ଏହି ଜାତୀୟ ବିପତ୍ତିରୁ ରକ୍ଷା ପାଇବା ପାଇଁ ସେ "ବ୍ରାହ୍ମଣ ଧର୍ମିତ ସ୍ଥାନୀକାଳରେ ସମ୍ପାଦିତ ବ୍ରାହ୍ମଣ ସ୍ଥବିରମାନଙ୍କ ପ୍ରତି" ବିଚାରରେ ଅଭିମାନ ତ୍ୟାଗ ପୂର୍ବକ ସ୍ୱକୀୟ ଆଦର୍ଶରେ ଅନ୍ୟ ଜାତିମାନଙ୍କୁ ସାଧୁ କର୍ମରେ ପ୍ରବୃତ୍ତ ହେବା ପାଇଁ ଜଣାଇଛନ୍ତି ବିନୀତ ଅନୁରୋଧ । ଉଦାହରଣ ସ୍ୱରୂପ :—



Digitized by PPRACHIN, SOA

"ନିଜ ସୁଖ ଲାଗି ଜାତି ନୁହେଁ ହିନ୍ଦୁ
ବିଶ୍ୱହିତେ ହିନ୍ଦୁ ହିତ ରକ୍ତ ବିନ୍ଦୁ ।
ଦେଖାଅ ଏ ସତ୍ୟ ଅଟଳ ପରାଣେ
ଦାଅ ଏ ମନ୍ତ୍ର ସର୍ବ କର୍ଣ୍ଣେ କାନେ ।"

(ବନ୍ଦୀର ସ୍ୱଦେଶ ଚିନ୍ତା)

ଏକତା କ୍ଷେତ୍ରରେ ଗୋପବନ୍ଧୁଙ୍କ ଦାନ ଅତୁଳନୀୟ । ସେ ସ୍ୱତଃପ୍ରବୃତ୍ତ ହୋଇ ବନ୍ଦୀର ଆତ୍ମକଥାରେ ଗାଉଛନ୍ତି :—

"ହିନ୍ଦୁ ମୁସଲମାନ ବୌଦ୍ଧ ଖ୍ରୀଷ୍ଟିୟାନ
ଶିଖ ଜୈନ ଯେତେ ଭାରତ ସନ୍ତାନ
ଯେତେ ଧର୍ମ ଯେତେ ବର୍ଣ୍ଣ-ଜାତି-କୁଳ
ଭାରତ ଜନନୀ ସମସ୍ତଙ୍କ ମୂଳ ।"

ପ୍ରକୃତରେ ଗୋପବନ୍ଧୁ ଦେଶର ଦୁର୍ଦ୍ଦଶା କଥା ନେଇ କାନ୍ଦୁଥିଲେ ଓ କନ୍ଦାଉଥିଲେ । ଗଡ଼ଜାତ ଆନ୍ଦୋଳନରେ ଢେଙ୍କାନାଳରେ ଯୋଗ ଦେଇଥିବା ଲୋକେ ପ୍ରାୟ ବାସୁଦେବଙ୍କର ଛୁଅ ଥିଲେ । ସେମାନଙ୍କ ମଧ୍ୟରୁ ଗୋପବନ୍ଧୁ ଅନ୍ୟତମ ।

ମଣିଷ ଜୀବନର ସର୍ବାଙ୍ଗୀନ ଉନ୍ନତି ପାଇଁ ଉତ୍କଳମଣି ଗୋପବନ୍ଧୁ ଏକ ସିଦ୍ଧିମନ୍ତ୍ର ଦେଇ କହନ୍ତି

"ଜାତୀୟ ମମତା ବିଶ୍ୱଜନ ପ୍ରୀତି,
ଉତ୍କଳବାସୀର ହେଉ ଏହା ନୀତି"

"ତମସୋ ମା ଜ୍ୟୋତିର୍ଗମୟ" ନୀତିଟି ତାଙ୍କର ସମଗ୍ର ଜୀବନର ନୀତିଥିଲା । ବିଶ୍ୱର ମିଳନ ଗୀତରେ କବି ଗାଉଛନ୍ତି :—

ଗିରି, ସାଗର, ନଦୀ ତପନ ଶଶୀ
ସର୍ବେ ତୁମ୍ଭେ ଦେବ ମୋତେ ପ୍ରେମ ପରଶି ।
ମୋ ପ୍ରାଣ ପ୍ରେମଧାରେ ଭାସିବ ଧରା
ହେବ ଏ ବିଶ୍ୱ ପ୍ରେମ-ପସରା ।

ହୃଦୟର କି ଗଭୀର ଆବେଗ ! ବିଶ୍ୱପ୍ରୀତି ଲାଗି କି ଅନ୍ତରନ୍ତ ସ୍ପୃହା ! ବିଶ୍ୱ ଲାଗି କି ମହାନ ପ୍ରାଣର ଅନନ୍ତ ପରିପ୍ରକାଶ । ବିଶ୍ୱପ୍ରେମରେ ଲୀନ ଥିଲା ତାଙ୍କର ଅମଳିନ ଜୀବନର କର୍ମସୂଚୀ । ଭଗବାନଙ୍କଠାରେ ଅଟଳ ବିଶ୍ୱାସ ଓ ନିଷ୍ଠା ରଖି ସେ ନିଜର ସମସ୍ତ ଜୀବନକୁ ମାନବ ସେବାରେ କରିଥିଲେ ନିୟୋଜିତ । ତାଙ୍କର ପୂର୍ଣ୍ଣ ପରିବାରର ଏକମାତ୍ର ପୁତ୍ରକୁ ମୃତ୍ୟୁ ମୁଖରେ ଛାଡ଼ି କରିଥିଲେ ପଳାୟନ । ପରେ ସେ ଗାଇ ଉଠିଥିଲେ :—

"ବିପଦ ଦମ୍ଭଙ୍କ କଷଟି ପାଷାଣ
ପରତନ୍ତ୍ର ଚିହ୍ନି ନର ହୃଦ ପ୍ରାଣ
ଅପରାଧ ହେଲେହେଁ ବିପଦ ଅନଳେ
ଭସ୍ମ ବୋଲି ଯେବେ ଦାଉ ଦାଉ ଜଳେ ।"

ବୀର ପୁରୁଷଙ୍କୁ ସାହସ ତଥା ଶକ୍ତିର ସଂଗ୍ରହ ନିମିତ୍ତ ସେ କହିଛନ୍ତି :—

"ପଛଘୁଞ୍ଚା ନାହିଁ ବୀରର ଜାତକେ
ନ ମରେ ସେ କେବେ ମରଣ ଆତଙ୍କେ"

ସେ ଆମ୍ଭମାନଙ୍କୁ ଉଦ୍ଦୀପନା ଦେଇ କହନ୍ତି :—

"ଜାଗ୍ରତ ପଥ ଦରଜା ଜଗତେ ନୁହେଁ ନର ପଶୁଶ୍ରେଷ୍ଠ
ପରହିତେ ସାଧି ମରେ ଯେ ମହୀରେ
ସେହି ଏକା ସୁପୁରୁଷ ।"

ଧୈର୍ଯ୍ୟ ବିସର୍ଜ୍ଜି ଜୀବନ ସ୍ରୋତରେ ଅଟେଇ ଯାଇ ଦେଶ ପାଇଁ କାମକରି ଯିବାକୁ ଗୋପବନ୍ଧୁ ଉପଦେଶ ଦେଇଛନ୍ତି । ତାଙ୍କ ଭାଷାରେ :—

"ସୁଖ-ଦୁଃଖ-ଚକ୍ର ଘୂରେ ନିରନ୍ତର
ଏକ ପରେ ଆନ ଆସିବ ମୁକର
ଅଳିଅ ଅନ୍ଧାର ଖେଳେ ଲୁଚକାଳି
ଆସିବ ଅଳିଅ ହେଉଛି ପାଳି
ପଡ଼ିଥିଲୁ ଏବେ ହେ ମାହେନ୍ଦ୍ର ବେଳା
କର ନାହିଁ ଭାଇ ଏବେ ଚଳେ ହେଳା ।"

ଗୋପବନ୍ଧୁ ଦେଶର ସ୍ୱାଧୀନତା ପାଇଁ ସ୍ୱରାଜ୍ୟର ମନ୍ତ୍ର ଭାଇନ କାନେ ଶୁଣାଇଥିଲେ—

"ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼,
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।"

ଏ ଜାତିର ଅତୀତକୁ ସ୍ମରଣ କରି ଲେଖନୀ ମୁନରେ ବାସ୍ତବ ଭାବରେ ପୁଣି ରୂପାୟିତ କରିଛନ୍ତି ସେ-



Digitized by PPRACHIN, SOA

"ଯାହାଁ ସେ କମାଣ ଅଶନି ଶବଦ
ଶୁଣି ଯାହା ଶତ୍ରୁ ଶ୍ରବଣ ସ୍ତବଧ
ଯାର ଟଙ୍କା, ତେଣ୍ଡା ବାଜା ଯାହାଁ, ଆଜି
ଯାହାଁ ସେ ଅଦମ୍ୟ ଭଗ୍ନ ବାଜିବାଜ ।"

କେବଳ ଏତିକି ନୁହଁ, ଏ ଓଡ଼ିଆ ଜାତି ରହୁ, ଏହାର ହୃତ ଗୌରବ ଫେରିଆସୁ । ପରାଧୀନତାର ଲୌହ ଶିକୁଳି ମଧ୍ୟରୁ ଏ ଜାତି ମୁକ୍ତିପାଉ । ଏହାହିଁ ଥିଲା ଗୋପବନ୍ଧୁଙ୍କର ପରମ ଲକ୍ଷ୍ୟ ।

ଆଜି ଆଉ ଗୋପବନ୍ଧୁ ଇହଜଗତରେ ନାହାନ୍ତି । ତାଙ୍କର ଜୀବନପକ୍ଷୀ ତା ୧୭.୬.୧୯୨୮ ଇହଧାମ ଛାଡ଼ି ଚାଲିଯାଇଛି । ସେହି ଦିନଟି ତାଙ୍କର ତିରୋଧାନ ଦିବସ । ଗୋପବନ୍ଧୁ କାଳର କରାଳ ସ୍ରୋତରେ ଲୀନ ହୋଇ ଯାଇଛନ୍ତି ସତ୍ୟ, କିନ୍ତୁ ତାଙ୍କର ଅମର ଲେଖନୀର ଅମର ସୃଷ୍ଟି ସମ୍ଭାର ବିଶ୍ୱଜୟୀ ନିଶାଣ ଧରି ଯୁଗ ଯୁଗର ଆଲୋକର ଦୀପ ସ୍ତମ୍ଭରୂପେ "ଦାସ ଅମରେ" ବୋଲି ଏ ବିଶ୍ୱ ଇତିହାସ ପୃଷ୍ଠାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ — ଏଥିରେ ତିଳେମାତ୍ର ସନ୍ଦେହର ଅବକାଶ ନାହିଁ । ସୁପ୍ରତିଷ୍ଠିତ କବି ଶ୍ରୀଯୁକ୍ତ ଯଦୁନାଥ ମହାପାତ୍ରଙ୍କ ଭାଷାରେ :—

"ଅକାଶଠ୍ ଜଇ ତୁମେ,
ପୂନ୍ନଖାପ୍ ଆଉର ଉଦାର
ଉଜ୍ଜ୍ୱଳ ଆଲୋକ ସ୍ତମ୍ଭ
ସତ୍ୟ ଧର୍ମ ନ୍ୟାୟ ଅହିଂସାର ।"

**ଶୈଳବାଳା ପଣ୍ଡା**
ଉ. ଏ. ଭ. ମହାବିଦ୍ୟାଳୟ

# ସ୍ମୃତିଚାରଣ

(୧୯୨୦ ମସିହା ମାର୍ଚ୍ଚ ୧୩ ତାରିଖରେ ବିହାର ଓଡ଼ିଶା କାଉନସିଲ୍ ବୈଠକରେ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ପ୍ରଦତ୍ତ ଗୋଟିଏ ଭାଷଣ ।)

"ଉକ୍ତ କାଉନସିଲ ପ୍ରାଦେଶିକ ଦୁର୍ଭିକ୍ଷ ସାହାଯ୍ୟ ବାବଦକୁ ଟ ୧୯,୦୦୦.୦୦ଙ୍କାରୁ ଟ ୫୦,୦୦୦.୦୦ଙ୍କାକୁ ବଢ଼ାଯାଇ ପୋଲିସର ୨୦ଧାରା ଖର୍ଚ୍ଚରୁ ଟ ୩୧,୦୦୦.୦୦ଙ୍କା କଟା ଯିବା ନିମନ୍ତେ ଉକ୍ତ କାଉନସିଲ ଲେଫ୍ଟେନାଣ୍ଟ ଗଭର୍ଣ୍ଣରଙ୍କୁ ପ୍ରସ୍ତାବ କରୁଛି ।"

ମାନ୍ୟବରେଷୁ,

ଏହି ପ୍ରଦେଶ ସୃଷ୍ଟି ହେବା ଦିନରୁ ଉକ୍ତ ସମ୍ବନ୍ଧରେ ଏହି ଧରଣ ପ୍ରସ୍ତାବ ଉତ୍ଥାପନ କରିବା କୌଣସି ବେସରକାରୀ ସଭ୍ୟର ଦୁର୍ଭାଗ୍ୟରେ ଘଟିଛି କି ନାହିଁ ମୁଁ ଜାଣେନା । ବେସରକାରୀ ସଭ୍ୟମାନେ ସାଧାରଣତଃ ଲୋକମାନଙ୍କର ଶିକ୍ଷା, ସ୍ୱାସ୍ଥ୍ୟ ଓ ଜନହିତକର କାର୍ଯ୍ୟ ନିମନ୍ତେ ଦାବୀ କରିଥାନ୍ତି । କିନ୍ତୁ ଲୋକମାନଙ୍କୁ ଯେତେବେଳେ ଖାଇବାକୁ ଗଣ୍ଡେ ଦାନା ନାହିଁ, ପିନ୍ଧିବାକୁ ଖଣ୍ଡେ ଲୁଗା ନାହିଁ, ରହିବାକୁ ଟିକିଏ ଜାଗା ନାହିଁ, ସେତେବେଳେ ଶିକ୍ଷା, ସ୍ୱାସ୍ଥ୍ୟର ଅର୍ଥ କ'ଣ ? ଦୁର୍ଭିକ୍ଷ ହେଉଛି ଗୋଟିଏ ଭୟଙ୍କର ଜିନିଷ । ଏହା ଭାବିବାକୁ ଯେପରି କଷ୍ଟଦାୟକ କହିବାକୁ ସେହିପରି ହୃଦୟ ବିଦାରକ, ଭୋଗିବାକୁ ମଧ୍ୟ ଏହା ଅତ୍ୟନ୍ତ ଦୁର୍ବିସହ । କିନ୍ତୁ ଦାପୁ ବର୍ଷକରୁ ଅଧିକ ହେବ ଲକ୍ଷ ଲକ୍ଷ ଲୋକ ଦୁର୍ଭିକ୍ଷର କରାଳ ଗ୍ରାସ ମଧ୍ୟରେ ସଂଗ୍ରାମ କରୁଛନ୍ତି । ମୁଁ ଏପରି ଗୋଟିଏ ଅଞ୍ଚଳରୁ ଆସିଛି ଯେଉଁଠାରେ ପ୍ରତିବର୍ଷ କେତେକ ଅଞ୍ଚଳ ବନ୍ୟା କ୍ଲିଷ୍ଟ । ଅନ୍ୟ କେତେକ ଅଞ୍ଚଳ ମରୁଡ଼ି ଗ୍ରସ୍ତ । ଲୋକ କୌଣସି ସାଧାରଣ ସହିବା ଅବସ୍ଥାରେ



Digitized by PPRACHIN, SOA

ଥିବା ବେଳେ ମୁଁ ସହଜରେ ଅଭିଭୂତ ହେବା ଲୋକ ନୁହେଁ । ଦୁଃଖ ଦାୟକ ପରିସ୍ଥିତି ଦ୍ୱାରା ଯଦି ମୁଁ ବାଧ୍ୟ ହୋଇ ନ ଥାନ୍ତି ତାହେଲେ ମୁଁ ଏପ୍ରକାର ପ୍ରସ୍ତାବ ଉକ୍ତ ସଭାକୁ ଆଣି ନ ଥାନ୍ତି ।

ଏହି ଯେଉଁ ଶେଷ ହେବାକୁ ଯାଉଥିବା ବର୍ଷରେ ଦୁର୍ଭିକ୍ଷ କେବଳ ତିନିଟି ଜିଲ୍ଲାରେ ଘୋଷଣା କରାଯାଇଛି ଏବଂ ୧୨ଲକ୍ଷ ଟଙ୍କା ବଜେଟରେ ଗୃହୀତ ଥିବା ସ୍ଥଳେ ଟ ୭,୮୦,୦୦୦.୦୦ଙ୍କା ଦୁର୍ଭିକ୍ଷ ରିଲିଫ ଦେବା ନିମନ୍ତେ ,ଅଟକଳ କରାଯାଇଛି । ସରକାର ବଜେଟରେ ଅଟକଳ କରାଯାଇଥିବା ଟଙ୍କାର ଅଧାରୁ କମ୍ ଖର୍ଚ୍ଚରେ ଗୋଟିଏ ଭୟଙ୍କର ବିପଦକୁ ଏଡ଼ାଇ ଦେଇ ପାରିବା ସକାଶେ ସେମାନଙ୍କ ମଧ୍ୟରେ ଅଭି-ବାଦନ ଜଣାଇ ପାରନ୍ତି । କିନ୍ତୁ ମୁଁ ଯଦି କହେ ମୋତେ କ୍ଷମା ଦିଆଯାଇ ପାରେ, ମୁଁ ଏହା ବାରମ୍ବାର କହୁଛି ଯେ, ଦୁର୍ଭିକ୍ଷର ପ୍ରକୋପ କମାଇବା ନିମନ୍ତେ ସରକାର ଯେଉଁ ବ୍ୟବସ୍ଥା ଗ୍ରହଣ କରିଛନ୍ତି, ପରିସ୍ଥିତିକୁ ସମ୍ଭାଳିବାକୁ ତାହା ଯଥେଷ୍ଟ ନୁହେଁ । ଏବଂ କେତେକ ଅଞ୍ଚଳରେ ଦୁଃସ୍ଥିତିରେ ପଡ଼ିଥିବା ଲୋକମାନଙ୍କ ପାଇଁ ସରକାର କର୍ତ୍ତବ୍ୟରେ ଚରମ ଅବହେଳା କରିଛନ୍ତି ।

ଏପରି ଅଞ୍ଚଳ ରହିଛି ଯେଉଁଠାରେ ଅବସ୍ଥା ଏତେ ଭୟାନକ ଯେ ପୂର୍ଣ୍ଣ ଭାବରେ ଦୃଷ୍ଟି ଦିଆଗଲେ ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକଙ୍କୁ କେତେକ ସାହାଯ୍ୟ ଦିଆ-ଯାଇ ପାରିବ । ମୁଁ ଯେତେବେଳେ ଏକଥା କହୁଛି, ନିର୍ଦ୍ଦିଷ୍ଟ ଭାବରେ ସେ କଥା ମୋ ମନ ଭିତରେ ରହିଛି, ତାହା ପୁରୀ ଜିଲ୍ଲାରେ ଏବଂ ମୁଁ ତାହା ନିଜ ଆଖିରେ ଦେଖିଅଛି ।

ସମ୍ମାନନୀୟ ଅର୍ଥ ବିଭାଗ ସଭ୍ୟ ପରବର୍ତ୍ତୀ ବର୍ଷ ବଜେଟରେ ଦୁର୍ଭିକ୍ଷ ରିଲିଫ ପାଇଁ ଟ୭୫,୦୦୦.୦୦ଙ୍କା ରଖି କହିଛନ୍ତି ଏବର୍ଷର ଶସ୍ୟ ଉତ୍ପାଦନ ଖୁବ୍ ପ୍ରଚୁର ପରିମାଣରେ ହୋଇଛି ଯେ, ଆସନ୍ତା ବର୍ଷକୁ ରିଲିଫ ଦେବାକୁ ପଡ଼ି ନ ପାରେ । ବାସ୍ତବରେ ପୁରୀ ଜିଲ୍ଲାର ବନ୍ୟାଞ୍ଚଳ ଲୋକଙ୍କ ଅବସ୍ଥା ସରକାରଙ୍କ ଅଧିଭୁକ୍ତ ଆସିଲାଣି କି ନାହିଁ ମୁଁ ସନ୍ଦିହାନ । ବର୍ତ୍ତମାନ ଅନ୍ୟାନ୍ୟ ଅଞ୍ଚଳର ଅବସ୍ଥା ଠିକ ରମି ପରିବର୍ତ୍ତିତ ହୋଇ ଆସୁଥିବା ବେଳେ ସେଠାରେ ରିଲିଫ ବ୍ୟବସ୍ଥା ଅତ୍ୟନ୍ତ ଜରୁରୀ ବୋଲି ମୁଁ ନିବେଦନ କରୁଛି । ଓଡ଼ିଶା ଭୂଖଣ୍ଡର କମିସନର ସମ୍ମାନୀୟ ଶ୍ରୀ ନିଂ ନିକଟ ଅତୀତରେ ସେ ଅଞ୍ଚଳକୁ ପରିଦର୍ଶନ ନିମନ୍ତେ ଯାଇ ଥିବାରୁ ମୁଁ ସେଥିପାଇଁ ତାଙ୍କୁ ଧନ୍ୟବାଦ ଦେଉଛି । ମୁଁ ଜାଣେ ସେ କେବଳ ଦୁର୍ଦ୍ଦଶା ଗ୍ରସ୍ତ ଅଞ୍ଚଳର ଗୋଟିଏ ଦୁଇଟି ଦେଖିଛନ୍ତି ଏବଂ ତାଠାରୁ ଯଥେଷ୍ଟ ଅଧିକ ଭୟାନକ ଅଞ୍ଚଳ ଦେଖିବାକୁ ଆଗ୍ରହ ପ୍ରକାଶ କରିଥିଲେ ମଧ୍ୟ ସୁବିଧା କରି ପାରି ନ ଥିଲେ । ତଥାପି ଯେତିକି ସେ ଦେଖିଛନ୍ତି ସେତିକରେ ପରିସ୍ଥିତିର ଗୁରୁତ୍ୱ ନିଶ୍ଚିତ ଭାବରେ ବୁଝି ଯାଇଛନ୍ତି ବୋଲି ମୁଁ ବିଶ୍ୱାସ କରୁଛି । ଏବଂ ଆଶା କରାଯାଇଛି ଯେ, ତାଙ୍କର ପରିଦର୍ଶନର ଫଳ ସ୍ୱରୂପ ସେ ଅଞ୍ଚଳ ଗୁଡ଼ି-କରେ ଦୁର୍ଭିକ୍ଷ ଘୋଷିତ ହେବ । ପ୍ରକୃତ ଭାବରେ ନ ହେବା ଅପେକ୍ଷା ବିଳମ୍ବରେ ଭଲ ।

ମହାଶୟ ମୋତେ କେତେପଦ କହିବାକୁ ଅନୁମତି ଦିଆଯାଉ. ମୁଁ ଏପର୍ଯ୍ୟନ୍ତ ପୁରୀ ଜିଲ୍ଲାରେ ଦୁର୍ଭିକ୍ଷ ଘୋଷଣା ନିମନ୍ତେ ଯାହା କହୁଛି ତାହା ପ୍ରମାଣ କରି ଦେଖାଇ ଦେବି । ପ୍ରାରମ୍ଭରେ ମୁଁ ଆପଣଙ୍କୁ ଏବଂ ଏ ସଭାର ସମସ୍ତ ସଭ୍ୟଙ୍କୁ ନିର୍ଭର ପ୍ରତିଶ୍ରୁତି ଦେଇ ପାରେ ଯେ, ଗୁରୁତ୍ୱ ପୂର୍ଣ୍ଣ ଘଟଣାଗୁଡ଼ିକୁ ବିଶେଷ କରି ଦୁର୍ଭିକ୍ଷକୁ ଅତିରଞ୍ଜିତ ନ କରି-ବାକୁ ମୁଁ ଅଧିକ ସଚେତନ ଏବଂ ଦୁର୍ଭିକ୍ଷର ଅଭିଜ୍ଞତା ମୋ ପାଇଁ ନୂଆ ନୁହେଁ ।

ଗତ ୧୨ ବର୍ଷ ଭିତରେ ଦୁଇଟି ଘଟଣାରେ ମୋର ଦୁଃସ୍ଥିତିର ଅଭିଜ୍ଞତା ହୋଇଛି ୧୯୫୭ ମସିହାରେ କଟକର ଯାଜପୁର ଓ କେନ୍ଦ୍ରାପଡ଼ା ସବଡ଼ିଭିଜନ୍‌ରେ ଏବଂ ୧୯୫୭ ମସିହାରେ ପୁରୀ ଜିଲ୍ଲାର ଚିଲିକା ଅଞ୍ଚଳରେ ମୁଁ ଯାହା ଦ୍ୱାରା ନିଜେ ସନ୍ତୁଷ୍ଟ ନୁହେଁ ସେପରି କଥା କେବେହେଲେ କହିବି ନାହିଁ । ଯେହେତୁ





Digitized by PPRACHIN, SOA

ମୁଁ ସବୁବେଳେ ବିଶ୍ୱାସ କରେ ଯେ ଜନସାଧାରଣଙ୍କ ସହ ଜୀବନଯାପନ ନିମନ୍ତେ ଅନ୍ୟ ଯେକୌଣସି ପରିସରଠାରୁ ଅଧିକ ସତ୍ୟ ଏବଂ ନିଷ୍ଠା ଦରକାର ଏବଂ ସେ ଗୁଡ଼ିକ ହେଉଛି ଚରମ ଶକ୍ତି ଯାହାକି ବିଜୟ ଆଣିଦେବ ।

ବନ୍ୟାଞ୍ଚଳର କେତେକ ଗାଁର ଲୋକମାନଙ୍କ ଅବସ୍ଥା ଏତେ ଶୋଚନୀୟ ଯେ କାଉନ୍ସିଲରେ ଥିବା ଅଧିକାଂଶ ସଭ୍ୟ ତାହା ସହଜରେ ପରିକଳ୍ପନା କରି ପାରିବେ ନାହିଁ । ୧୯୧୮ ମସିହା ନଭେମ୍ବର ମାସଠାରୁ ଯେଉଁ ଅବନତିର ସୂଚନା ସ୍ପଷ୍ଟଭାବରେ ଦେଖାଯାଉଥିଲା ମୁଁ କାଉନସିଲର ପ୍ରତ୍ୟେକ ସଭାରେ ସେ ସମ୍ପର୍କରେ ପ୍ରଶ୍ନ ପଚାରି ଆସୁଅଛି, ଜନସାଧାରଣଙ୍କ ସାଧାରଣ ସଭାମାନଙ୍କରେ ପ୍ରସ୍ତାବମାନ ନିଆଯାଇଛି । ଲୋକଙ୍କ ଅବସ୍ଥା ରପ୍ତାଞ୍ଜଳିନ ଖବର କାଗଜମାନଙ୍କରେ ଦିଆଯାଇଛି । ଏପରିକି ସମଗ୍ର ଓଡ଼ିଆ ଲୋକଙ୍କର ସମ୍ମିଳନୀ „ଉତ୍କଳ ସମ୍ମିଳନୀ" ଏକମତରେ ସରକାରଙ୍କୁ ଜଣାଇଛନ୍ତି । କିନ୍ତୁ ସବୁ ଗୁଡ଼ିକ ନିରୁତ୍ତର । ଅବସ୍ଥା ପ୍ରତିଦିନ ଶୋଚନୀୟ ଅବସ୍ଥାକୁ ଗତି କରି ବଢ଼ି ଚାଲିଛି । ମୁଁ ନିମ୍ନରେ ଖବର କାଗଜରେ ବାହାରିଥିବା ଉଦ୍ଧୃତି କରୁଛି । ଏହା ତତ୍କାଳୀନ ଅକ୍ଟୋବର ଶେଷରେ ଲୋକଙ୍କ ଅବସ୍ଥାର ଚିତ୍ର ଦେବ ।

"ଅନେକ ସ୍ଥାନରେ ଦୁରବସ୍ଥା ଶେଷରେ ଶୋଚନୀୟରେ ପରିଣତ ହେଲଣି । ଯାହା ଆଶଙ୍କା କରାଯାଉଥିଲା ତାହା ସତ୍ୟରେ ପରିଣତ ହେଲା । ପିଲାଠାରୁ ମାଆ ଖାଦ୍ୟ ଛଡ଼ାଇ ନେଉଛି । ଲୋକେ ଘୋଡ଼ର ଜୁଆରିର ଗଛର ମୂଳ ଫଳ ଓ ପତ୍ର ପ୍ରଭୃତି ଅଖାଦ୍ୟ ଖାଇଲେଣି । ବର୍ତ୍ତମାନ ମଧ୍ୟ ସେ ଗୁଡ଼ିକର ଅଭାବ । ପ୍ରପୀଡ଼ିତ ଅଞ୍ଚଳ ଗୁଡ଼ିକରେ ବିଶେଷକରି ବନ୍ୟାଞ୍ଚଳମାନଙ୍କରେ ଦୁର୍ଭିକ୍ଷଗ୍ରସ୍ତ ଲୋକେ କଙ୍କାଳ ଦେହଖଣ୍ଡିକୁ ଆଶ୍ରୟକରି ହଲି ହଲି ଏଣେତେଣେ ବୁଲୁଛନ୍ତି—ଏବଂ ସେମାନଙ୍କ ଅବସ୍ଥା ଏତେ ଶୋଚନୀୟ ଯେ ସେମାନେ ଯେ କୌଣସି ସାମ୍ନାରେ ଥିଲେ ପଡ଼ିଯାଇ ପାରନ୍ତି ବୋଲି ମନେ ହେଉଛି । ସେମାନେ ଭୟଙ୍କର ଭୂତ ପରି ମନେ ହେଉଛନ୍ତି । କେତେକ ପଡ଼ି ମରିଯାଉଛନ୍ତି । ଶବ-ଗୁଡ଼ିକ ରାସ୍ତାକଡ଼ମାନଙ୍କରେ ପଡ଼ିଥିବାର ଦେଖାଯାଉଛି । ଅନେକ ମଧ୍ୟ ଜେଲ ଭିତରେ ଗଣ୍ଡିଏ ଭଲ ଖାବାରେ ଖାଇବାକୁ ମିଳିବ ବୋଲି ଚେଷ୍ଟା କରୁଛନ୍ତି । ଏ ପରିସ୍ଥିତିରେ ଯେଉଁମାନଙ୍କ ଦେହରେ ଟିକିଏ ଶକ୍ତି ଅଛି ସେମାନେ କାମ ପାଉ ନାହାନ୍ତି । ମାଆ ତା ଛୁଆକୁ ଏବଂ ସ୍ୱାମୀ ତା ସ୍ତ୍ରୀକୁ ଛାଡ଼ି ପଳାଉଛି । କିଏ କୁଆଡ଼େ ପଳାଉଛନ୍ତି ଯେ କୁଆଡ଼େ ସେମାନେ ଯାଉଛନ୍ତି ତାହା କେହି ଜାଣେ ନା, ପ୍ରତ୍ୟେକ ନିଜକୁ ନିଜେ ବଞ୍ଚାଇବାକୁ ବଡ ମନେ କରୁଛନ୍ତି । ଶବର ମଡ଼ାଗଦା ମଧ୍ୟରେ ଅରକ୍ଷ ପିଲାମାନେ ଦେଖାଯାଉଛନ୍ତି । ଅଧିକାଂଶ ସ୍ଥାନରେ ୧୮୬୬ର ଭୟଙ୍କର ନଅଙ୍କ ଦୁର୍ଭିକ୍ଷର ପୁନରାବୃତ୍ତି ଘଟିଲା ।"

ଏ ଘଟଣା ଅକ୍ଷରେ ଅକ୍ଷରେ ସତ୍ୟ । ମୁଁ ଏହାର ସ୍ପଷ୍ଟ ପ୍ରମାଣ ରଖିଛି । ଉତ୍କଳ ସମ୍ମିଳନୀର ଅନୁରୋଧ ରକ୍ଷାକରି ବେସରକାରୀ ସଭ୍ୟଙ୍କ ସହ ସହଯୋଗ କରି ଯଦି ସରକାର କୌଣସି ଦାୟିତ୍ୱ-ପୂର୍ଣ୍ଣ ଅଫିସରଙ୍କୁ ବାସ୍ତବ ଘଟଣା ଅନୁସନ୍ଧାନ ପାଇଁ ପଠାଇଥାନ୍ତେ ମୁଁ ନିଶ୍ଚିତ ଯେ ସରକାରଙ୍କ ଘଟଣାର ସତ୍ୟତା ସମ୍ବନ୍ଧରେ କୌଣସି ସନ୍ଦେହ ନ ଥାନ୍ତା । ଖବର କାଗଜରେ ସମ୍ବାଦ ବାହାରିବା ପରେ ଅବସ୍ଥାଠାରୁ ଅବସ୍ଥା ଆହୁରି ଶୋଚନୀୟ ଅବସ୍ଥାକୁ ଗଲା । କେତେକ ଗାଁ ପ୍ରକୃତରେ ମରୁଭୂମିରେ ପରିଣତ ହେଲଣି । ମୃତ୍ୟୁ ସଂଖ୍ୟା ବଢ଼ିବାରେ ଲାଗିଛି ।

ସ୍ଥାନୀୟ କର୍ତ୍ତୃପକ୍ଷଙ୍କ ଦ୍ୱାରା ଉକ୍ତ ମୃତ୍ୟୁଗୁଡ଼ିକୁ ଯେଉଁ ରୂପ ଦିଆଯାଉ ନା କାହିଁକି ଖାଦ୍ୟାଭାବ ଓ ତଜ୍ଜନୀତ ଧାରଣାଯୋଗୁଁ ଅଧିକାଂଶ ମୃତ୍ୟୁ ଘଟିଛି ବୋଲି କୁହାଯାଉଛି । ଉକ୍ତ କାଉନସିଲ ଦ୍ୱାରା ବେସରକାରୀ ସଭ୍ୟଙ୍କୁ ନେଇ ଗଢ଼ାଯାଉଥିବା ଅନୁସନ୍ଧାନ କମିଟିର ବିବରଣୀ ପ୍ରକାଶ ପାଇଲେ



Digitized by PPRACHIN, SOA

ସବୁକଥା ସଦାରେ ପଡ଼ିବ । ଏହାଦ୍ୱାରା ଯାହା ହେଉ ବାହାକୁ ବିଶେଷ କରି ହୃଦନାଟ୍ୟ ପରିବେଷଣ, କଲିକତାର ଓଡ଼ିଆ ସମାଜ, ପ୍ରାଦେଶିକ ଦୁର୍ଭିକ୍ଷ ରିଲିଫ୍ ସଂସ୍ଥାର ସାହାଯ୍ୟ ଯେତେ କମ ହେଲେ ମଧ୍ୟ ଜିଲ୍ଲା ଅଫିସର ଓ ବେସରକାରୀ ସହଯୋଗରେ ଯେଉଁମାନଙ୍କ ସାହାଯ୍ୟ ଦରକାର ସେମାନଙ୍କୁ ଦିଆଯାଇଥିବ ମୁଁ ସ୍ୱୀକାର କରୁଛି । କିନ୍ତୁ ସେ ଗୁଡ଼ିକ ଲୋକମାନଙ୍କ ଦୁର୍ଦ୍ଦଶା ମୋଚନ ନିମନ୍ତେ ଯଥେଷ୍ଟ ନୁହେଁ । ବେସରକାରୀ ସାହାଯ୍ୟ ସବୁ ବନ୍ଦ ହୋଇ ଆସିଲାଣି । ବର୍ତ୍ତମାନ ଏ ସମୟରେ ସରକାରୀ ସାହାଯ୍ୟ ଆଗ ଅପେକ୍ଷା ଅତ୍ୟନ୍ତ ଅବଶ୍ୟକ ଏବଂ ଜରୁରୀ ।

ମୁଁ ଆଜି ଅଧିକ ଟିକିନିଖି ବର୍ଣ୍ଣନା କରି କାଉନସିଲର ଅଧିକ ସମୟ ନେବାକୁ ଚାହେଁ ନାହିଁ, ମୁଁ ପ୍ରସ୍ତାବ ପାଇଁ ନୋଟିସ ଦେଇ ସାରିବା ପରେ ନିଜେ ଅଧିକ ଓ ଭଲ ଭାବରେ ଘଟଣା ଜାଣି ସେ ବିଷୟ ଉପସ୍ଥାପନ କରିବା ନିମନ୍ତେ ପ୍ରପୀଡ଼ିତ ଗ୍ରାମାଞ୍ଚଳକୁ ଦେଖିବାକୁ ଯାଇଥିଲି । ମୁଁ ମଧ୍ୟ କେତେକ ଘରକୁ ଯାଇଥିଲି । ଗୋଟିଏ ବର୍ଷ ଆଗରୁ ସେମାନେ ଭଲ ଅବସ୍ଥାରେ ଥିଲେ । ସେ ଘରଗୁଡ଼ିକ ଭଲ ଚଳାଚଳ ବୋଲି ଜଣାଯାଉଥିଲା । କିନ୍ତୁ ବର୍ତ୍ତମାନ ସେମାନେ ପୁରାପୁରି ଅଭାବରେ ଅଛନ୍ତି । ନିର୍ଭର କରି ଚଳିବା ପାଇଁ ତାଙ୍କ ହାତରେ କିଛି ନ ଥିବାର ଦେଖିଲି । ଜମିଜମା ବିକି ଦେଇଛନ୍ତି ବା ବନ୍ଧକ ରଖିଛନ୍ତି । ଗହଣା ଓ ବାସନ ଗୁଡ଼ିକ ଆଗରୁ ଯାଇଛି, ଏବଂ ସେମାନେ ଆଗରୁ ଗୋରୁ ଗାଈ ହରାଇ ବସିଛନ୍ତି । ଯଦି ତଥାପି ତାଙ୍କ ପାଖରେ କିଛି ରହିଯାଇଥାଏ ତାହେଲେ ତାହା ପାଇଁ କିଣିବା ଲୋକର ଅଭାବ । ମୁଁ ଦେଖିଥିଲା ଗୋଟିଏ ଘର ଭିତରୁ ସେମାନେ ଖାଉଥିବା ଖାଦ୍ୟର ନମୁନା ନେଇ ଆସିଛି । ଏଠାରେ ମୁଁ ତାକୁ ମୋ ଟେବୁଲ ଉପରେ ଥୋଇଛି । ତାହା ହେଉଛି ସବୁଜପତ୍ର ଯାହାକୁ କେହି ଖାଦ୍ୟ ଆକାରରେ ବ୍ୟବହାର କରେନା । ସେ ପାଚିଲା ହୋଇଛି କିଛି ଖୁଦ ମିଶା କୁଣ୍ଡାର ଗୁଣ୍ଡ । ଯେଉଁ ଖାଦ୍ୟ ସେମାନେ ଦିନରେ ଥରେ ଏବଂ ବହୁ ବିଳମ୍ବରେ ଖାଆନ୍ତି । ତାହା ହେଉଛି ସିଝା ପତ୍ରରେ ସାମାନ୍ୟ ଗୁଣ୍ଡ ମିଶା ଯାଇଥିବା ଖାଦ୍ୟ ଅନେକ ତା ସହିତ ଟିକିଏ ଲୁଣ ମିଶାଇବାକୁ ପାଆନ୍ତି ନାହିଁ । ଯେଉଁମାନେ ଗତବର୍ଷ ଗ୍ରାମରେ ଭଲ ଭାବରେ ଚଳୁଥିବା ଲୋକଙ୍କ ଏପରି ଅବସ୍ଥା ଅନ୍ୟମାନଙ୍କ ଦୁଃଖ ଯନ୍ତ୍ରଣା ବର୍ଣ୍ଣନା ନ କରି ମଧ୍ୟ କଳ୍ପନା କରିହୋଇ ପାରେ । ମୋ ଟେବୁଲ ଉପରେ ଗୁଡ଼ିଏ ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକଙ୍କ ଫଟୋ ମଧ୍ୟ ଅଛି । ଏହା ଜାନୁୟାରୀ ଶେଷ ଆଡ଼କୁ ଗୋପ ଅଞ୍ଚଳରୁ ନିଆଯାଇଛି । ଏହା ନିଜକୁ ନିଜେ ସବୁ କହିବ । ଯଦି ଏଭଳି ଅବସ୍ଥା ଦୁର୍ଭିକ୍ଷ କୁହା ନଯିବ କାହାକୁ ଦୁର୍ଭିକ୍ଷ କୁହାଯିବ ମୁଁ ଜାଣେ ନା ? ମୁଁ ଏ ସମସ୍ତ ଆପଣଙ୍କର ଏବଂ ଉକ୍ତ କାଉନସିଲର ବିଚାର ଉପରେ ଛାଡ଼ି ଦେଉଛି ।

ଏପରିକି ଏ ସବୁ ପରେ ଆପଣଙ୍କ ପରି ଲୋକପ୍ରିୟ ଶାସକ ସଭାପତିତ୍ୱ କରୁଥିବାବେଳେ ସରକାରଙ୍କ ଉଦାରତା ଓ ମହାନତା ପ୍ରତି ମୁଁ ଆସ୍ଥା ହରାଏ ନାହିଁ । ଗଲା କଥା ଯାଉ । ଅନୁରୋଧ କରୁଛି ଦୟାକରି ସେମାନଙ୍କୁ ବଞ୍ଚାନ୍ତୁ । ଏହା ସେମାନଙ୍କର ପ୍ରାର୍ଥ୍ୟ । ମୁଁ ଆଶା ଓ ବିଶ୍ୱାସ କରୁଛି ଯେ, ଦୁର୍ଭିକ୍ଷ ଘୋଷଣା କରାଗଲେ—ସେ ପରିସ୍ଥିତିରେ ଅନେକ ଖର୍ଚ୍ଚ ମଧ୍ୟ ହେବ । ଯଦି ଦୁର୍ଭିକ୍ଷ ପାଇଁ ପ୍ରାଦେଶିକ ଅଂଶକୁ ଟ ୫୦,୦୦୦ଙ୍କାକୁ କମାଇ ଦିଆଯାଏ ତାହେଲେ ସରକାରଙ୍କ ଭାଗକୁ ମିଶାଇ ୨ଲକ୍ଷ ଟଙ୍କା ହେବ, ଯଦ୍ୱାରା କି ଅବସ୍ଥାକୁ ସୁବିଧାରେ ସମ୍ଭାଳି ହେବ । ପୋଲିସ ବିଭାଗ ଖର୍ଚ୍ଚରୁ ଟ ୩୯,୦୦୦ଙ୍କା କମ୍ କରି ଦିଆଯିବାକୁ ମୁଁ ପ୍ରସ୍ତାବ କରୁଛି । ଯଦି ପୁରୀ ଜିଲ୍ଲାରେ ପ୍ରପୀଡ଼ିତ ଅଞ୍ଚଳରେ ରିଲିଫ କାର୍ଯ୍ୟ ସଙ୍ଗଠିତ ହୋଇପାରେ ତା ହେଲେ ମୁଁ ନିଶ୍ଚିତ ଯେ, ସେ ଅଞ୍ଚଳରେ ବହୁତ ଅନେକ ସଂଖ୍ୟା କମିଯିବ । ପ୍ରଦେଶର ଅନ୍ୟ ଅଞ୍ଚଳରେ ଆର୍ଥିକ ଅବସ୍ଥାର କିଛି ଉନ୍ନତି ଘଟିଛି ।



Digitized by PPRACHIN, SOA

ତେଣୁ ଆମେ କମ୍ ପୋଲିସ ସାହାଯ୍ୟ ନେଇ ଅନନ୍ତା ବର୍ଷ ଚଳାଇ ନେଇ ପାରିବା । ପୋଲିସର ବିଶେଷ ଉପ ବିଭାଗରେ ପରବର୍ଷ ପାଇଁ ୮୦,୮୭୫ ଟଙ୍କା ଅଟକଳ କରାଯାଇଛି ଯାହାକି ଅପେକ୍ଷାକୃତ ଅଧିକ ମନେ ହୁଏ । ଖୁରଧା ଟ୍ରେନିଂ ସ୍କୁଲ୍ ଗୋଟିଏ ବର୍ଷ ପାଇଁ ବନ୍ଦ କରାଯାଉ । ତେଣୁ ପୋଲିସ ବିଭାଗର ଦକ୍ଷତାରେ ଅଳ୍ପ ନ ଅଣି ଭିନ୍ନ ଭିନ୍ନ ଖର୍ଚ୍ଚରୁ ୫୩୧,୦୦୦ ଟଙ୍କା କଟାଯାଉ । ମୁଁ ଆଶଙ୍କା କରୁଛି ଯେ ମାନ୍ୟବର ଅର୍ଥ ବିଭାଗ ସଭ୍ୟ ଏହା ମୁଁ କାହିଁକି ଫାଇନାନ୍ସ କମିଟିରେ ଉଠାଇଲି ନାହିଁ ବୋଲି ଆପତ୍ତି କରିପାରନ୍ତି । ଯାହା ହେଉ ମୋର ବନ୍ଧୁ ମାନ୍ୟବର ସଭ୍ୟ ଏସ୍. କେ. ସାହାଣୀ ତାହା ଉଠାଇ ଥିଲେ । ମୁଁ ଏ ବିଷୟ ପ୍ରତି ଜୋର ନ ଦେବାର କାରଣ ଏହି ଯେ, ମୁଁ ଜାଣେ କୌଣସି ଅଞ୍ଚଳରେ ଦୁର୍ଭିକ୍ଷ ରିଲିଫ ନିମନ୍ତେ ସରକାର ନିର୍ଦ୍ଦିଷ୍ଟ ସ୍କିମ୍ ନ ରଖିଥିବାରୁ ମୋ ପ୍ରସ୍ତାବ ଗ୍ରହଣୀୟ ହେବ ନାହିଁ । ବର୍ତ୍ତମାନ ଡ଼ିଭିଜନାଲ କମିଶନର ଜଲେଟ ଖାଦ୍ୟରେ ପ୍ରପୀଡ଼ିତ ଅଞ୍ଚଳ ଦେଖି ଯାଇବା ପରେ ଏ ବିଷୟ ସହୃଦୟତାର ସହିତ ବିଚାର ହେବ ବୋଲି ମୋର ଆଶା ହେଉଛି । ମୁଁ ଆପଣଙ୍କ କାଉନସିଲରେ ବିଶ୍ୱାସ ଯୋଗ୍ୟତାର କାର୍ଯ୍ୟ କରିବା ପାଇଁ ସଂକଳ୍ପ ବନ୍ଧ-ଥିବାରୁ ଉକ୍ତ ସୁଯୋଗରେ ହତଭାଗ୍ୟ ଅଞ୍ଚଳର ଦୁର୍ଦ୍ଦଶାକ୍ଳିଷ୍ଟ ମଣିଷର ଦୁଃଖ ଦୁର୍ବିପାକକୁ ମୁଁ ଆପ-ଣଙ୍କ ଆଗରେ ଉପସ୍ଥାପିତ କରୁଛି । ଏତିକ କହି ଉକ୍ତ ପ୍ରସ୍ତାବକୁ କାଉନସିଲରେ ଗ୍ରହଣ ନିମନ୍ତେ ସୁପାରିଶ କରୁଛି ।

× × ×

ଆଗ ପାଞ୍ଚଟି ୟୁନିୟନ । ମୁଁ ସଠିକ ଭାବରେ ଜାଣେନା କେତୋଟି ୟୁନିୟନ ପ୍ରପୀଡ଼ିତ । ତେବେ ମୋ ଦ୍ୱାରା ପଚରା ଯାଇଥିବା ଗୋଟିଏ ପ୍ରଶ୍ନ ଉତ୍ତ-ରରେ ଉକ୍ତ କାଉନସିଲରେ କୁହାଯାଇଥିଲା ଯେ, ତିନିଟି ଥାନାର ୨୫୦ ଗ୍ରାମ କମ୍ ବା ବେଶୀ ପ୍ରପୀଡ଼ିତ ହୋଇଛନ୍ତି ।

ଅଗ ଏପରି ଘଟଣା ମୋଟେ ଆଲୋଚନା କରିବାର ଲାଭ ନାହିଁ । ଯେତେବେଳେ ସରକାରୀ ଏବଂ ମୋ ପରି ବେସରକାରୀ ସଭ୍ୟ ଗୋଟିଏ ବିଷୟରେ ଏକମତ ହୋଇ ପାରିବେ—ବିଶେଷ କରି ଲୋକମାନେ ଯେତେବେଳେ ମରୁଛନ୍ତି ସେତେବେଳେ ଏହା ହେବା ବାଞ୍ଛନୀୟ ନୁହେଁ ।

ମୁଁ ଏହା ନିଜ ଆଖିରେ ଦେଖିଛି । ମୁଁ ତାହା କେବେ ଅବିଶ୍ୱାସ କରି ପାରିବି ନାହିଁ । ଏହାଛଡ଼ା ମୁଁ ଅଧିକ କିଛି କହିବି ନାହିଁ । ମାନ୍ୟ-ବର ସଭ୍ୟ ମୋତେ ପ୍ରତିଶ୍ରୁତି ଦେଲେ ଯେ ଯଦି ନିର୍ଦ୍ଦିଷ୍ଟ ଭାବରେ ଦୁର୍ଭିକ୍ଷ ଘୋଷଣା ଠିକ ହୋଇନାଏ ତାହେଲେ ଟଙ୍କାର ବରାଦ କରାଯିବ । ଦୁର୍ଭିକ୍ଷ ଘୋଷଣା କରି ବା ନକରି କିନ୍ତୁ ଯେପରିକି ଲୋକଙ୍କୁ ମୃତ୍ୟୁ ମୁଖରୁ ବଞ୍ଚାଅ । ଏହା ହେଉଛି ମୋର ବିନୀତ ଅନୁରୋଧ । ମାନ୍ୟବର ଗ୍ରୁନିଂ କହିଲେ ଯେ ଏଥି-ପାଇଁ ଯାହା କରାଯିବା କଥା କରାଯାଇଅଛି, ଏବଂ କରାଯାଉଅଛି । ଠିକଅଛି ଯାହା କରାଯାଇଅଛି ସେଥିରେ ମୁଁ ସରକାରୀ ଅଫିସରଙ୍କ ଦୋଷ ଖୋଜୁ ନାହିଁ କିନ୍ତୁ ମୁଁ ଦାବୀ କରୁଛି ଯେ ସେମାନେ ବର୍ତ୍ତମାନ ପରିପ୍ରେକ୍ଷୀରେ କଣ କରିବେ । ଠିକଅଛି ଗୋଟିଏ ଛୋଟ ଜିଲ୍ଲାର ଛୋଟ ଅଞ୍ଚଳଟିଏ ପ୍ରପୀଡ଼ିତ ହୋଇଛି ବୋଲି ସେଥିପାଇଁ ପ୍ରଦେଶର ଖର୍ଚ୍ଚର ଅଟକଳକୁ ବଢ଼ାଇବାର କାରଣ ନାହିଁ । କିନ୍ତୁ ଏହା ଗୋଟିଏ ବଡ଼ ଅଞ୍ଚଳ ବା ଛୋଟ ଅଞ୍ଚଳ ସେଥିରେ କିଛି ଯାଏ ଆସେ ନାହିଁ । ବ୍ରିଟିଶ ସାମ୍ରାଜ୍ୟର ଏ ପ୍ରଦେଶର ଅଜଣା କୋଣରେ ଯଦି କୌଣସି ଲୋକ ଖାଦ୍ୟ ବିନା ମରେ ମୁଁ ଭାବୁଛି ତାର ରକ୍ତ ମୋ ଉପରେ ଏବଂ ଯେଉଁମାନେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ଶାସନକଳ ସହିତ ଜଡ଼ିତ ଅଛନ୍ତି ସେମାନଙ୍କ ଉପରେ ପଡ଼ିବ ଏବଂ ଏଥିପାଇଁ ସେମାନେ ଦାୟୀ- ଏତିକିରୁ ମୁଁ ସମସ୍ତ ଭାର ଆପଣଙ୍କ ଉପରେ ଅର୍ପଣ କରୁଛି ।

ଭାଷାନ୍ତର—ଶ୍ରୀ କୃଷ୍ଣଚନ୍ଦ୍ର ନାୟକ

(From Gopobondhu in Legislative)



Digitized by PPRACHIN, SOA

# ଶାନ୍ତିନିକେତନ ଓ ସତ୍ୟବାଦୀ : ଏକ ଆଲୋଚନା

ଶାନ୍ତିନିକେତନ ବିଦ୍ୟାଳୟର ପରିକଳ୍ପନା ୧୯୦୧ରେ । ସତ୍ୟବାଦୀ ବିଦ୍ୟାଳୟର ପରିକଳ୍ପନା ତା'ର କିଛିଟା ପରବର୍ତ୍ତୀ । ବିଂଶଶତକର ୩ୟ ଦଶକ, ଉଭୟ ଅନୁଷ୍ଠାନର ଇତିହାସରେ ଏକ ସନ୍ଧିକ୍ଷଣ । ଏହି ସମୟରେ ଶାନ୍ତିନିକେତନ ବିଦ୍ୟାଳୟ ବିଶ୍ୱବିଦ୍ୟାଳୟର ବିକଶିତରୂପ ଧାରଣ କଲା । ଆଉ ସମସ୍ତ ତ୍ୟାଗ ଓ ଅଧ୍ୟବସାୟ ସତ୍ତ୍ୱେ ୧୯୨୬ରେ ସତ୍ୟବାଦୀ ବିଦ୍ୟାଳୟର ଅବସାନ ହେଲା । ତେବେ ୧୯୦୯ ରୁ ୧୯୨୬ ପର୍ଯ୍ୟନ୍ତ ସମାନ୍ତରାଳ ଭାବରେ ଗଢ଼ିଉଠୁଥିବା ଏହି ବିଦ୍ୟାଳୟଦ୍ୱୟ ମଧ୍ୟରେ କେତେକ ସାମଞ୍ଜସ୍ୟ ହୁଏତ ଥିଲା । ସେଥିମଧ୍ୟରେ ସବୁଠାରୁ ବଡ ସାମଞ୍ଜସ୍ୟ ହେଉଛି ଉଭୟ ବିଦ୍ୟାଳୟରେ, ମୁକ୍ତାକାଶତଳେ ସମ୍ପୂର୍ଣ୍ଣ ପ୍ରାକୃତିକ ପରିବେଶରେ ଅଧ୍ୟାପନା କରାଯାଉଥିଲା । ଉଭୟ ବିଦ୍ୟାଳୟ ଥିଲା ବନବିଦ୍ୟାଳୟ ବା ଯଥାର୍ଥ ଭାବରେ କହିଲେ, ଉପବନ ବିଦ୍ୟାଳୟ । ତେଣୁ ଅନେକ ସମୟରେ ଶାନ୍ତିନିକେତନ ସହ ସତ୍ୟବାଦୀ ବିଦ୍ୟାଳୟର ତୁଳନା କରାଯାଏ । ଶାନ୍ତିନିକେତନ ମନରେ ପଡ଼ିଲେ ସତ୍ୟବାଦୀ ଓ ସତ୍ୟବାଦୀ ମନେ ପଡ଼ିଲେ ଶାନ୍ତିନିକେତନ ମନେ ପଡ଼େ; ଧରିନିଆଯାଏ ଉଭୟ ବିଦ୍ୟାଳୟର ଆଦର୍ଶ ଏକ ଓ ଅଭିନ୍ନ ଥିଲା । କେବଳ ପ୍ରୟୋଗ ବା ସାଧନା କ୍ଷେତ୍ରରେ ସାମାନ୍ୟ ପାର୍ଥକ୍ୟ ଥିଲା ବୋଲି ଗ୍ରହଣ କରି ନିଆଯାଏ । ଏହି ପ୍ରସଙ୍ଗରେ କୁହାଯାଏ ଯେ ଶାନ୍ତିନିକେତନରେ ସତ୍ୟବାଦୀ ପରି "ନିଜ କାମ ନିଜେ କର" ଆଦର୍ଶକୁ ସ୍ୱୀକାର କରାଯାଇଥିଲେ ମଧ୍ୟ କାର୍ଯ୍ୟକ୍ଷେତ୍ରରେ ତାର ପରମ୍ପରା ନ ଥିଲା । ଏଇଠି କହିଦେବାର ଅଛି ଆପାତ ସାମଞ୍ଜସ୍ୟ ତଳେ ଉଭୟ ବିଦ୍ୟାଳୟ ମଧ୍ୟରେ ପାର୍ଥକ୍ୟର ସୀମାରେଖା ଥିଲା ବ୍ୟାପକ ଓ ଗଭୀର । ଉଭୟ ବିଦ୍ୟାଳୟର ଆଦର୍ଶ ସମ୍ପୂର୍ଣ୍ଣ ଭାବରେ ଭିନ୍ନଥିଲା । ଅବଶ୍ୟ ଏଠାରେ ଆଦର୍ଶ ଓ ତା'ର ପ୍ରୟୋଗକୁ ସମ୍ପୂର୍ଣ୍ଣ ଅଲଗା କରି ଦେଖାଯାଉ ନାହିଁ । ତେଣୁ ରବୀନ୍ଦ୍ରନାଥଙ୍କର ପରିକଳ୍ପନା କ'ଣ ଥିଲା ତା ଅଲଗା କଥା । କିନ୍ତୁ ଶାନ୍ତିନିକେତନକୁ ସେ ଯେଉଁ ରୂପ ଦେଇଥିଲେ ସେଇ କଥାହିଁ ଏଠି କୁହାଯାଉଛି । 'ନିଜ କାମ ନିଜେ କର' କେବେ ଶାନ୍ତିନିକେତନର ଆଦର୍ଶ ନ ଥିଲା । ୧୯୧୫ରେ ମହାତ୍ମାଗାନ୍ଧୀ ଶାନ୍ତିନିକେତନ ଆସିବା ସମୟରେ ତାଙ୍କର ପ୍ରତ୍ୟକ୍ଷ ଉଦ୍ୟମରେ ଶାନ୍ତିନିକେତନରେ 'ନିଜ କାମ ନିଜେ କର' ପରମ୍ପରା ପ୍ରବର୍ତ୍ତନର ପ୍ରଚେଷ୍ଟା କରାଯାଇଥିଲା । ରବୀନ୍ଦ୍ରନାଥ ଏଥିରେ ସ୍ୱରାଜ୍ୟର ବୀଜ ରହିଛି କହି ଏ ପ୍ରଚେଷ୍ଟାକୁ ଆଶୀର୍ବାଦ କରିଥିଲେ । ବାସନ ମାଜୁଥିବା ଛାତ୍ର ଅଧ୍ୟାପକମାନଙ୍କ କ୍ଲାନ୍ତି ଅପନୋଦନ ପାଇଁ ଓ ସେମାନଙ୍କୁ ଆନନ୍ଦ ଦେବା ପାଇଁ ଅନ୍ୟ ଦଳେ ଅଦୂରରେ ସୀତାର ବାଦନ କରିବା ପର୍ଯ୍ୟନ୍ତ କଥାଗଲା । ଶେଷରେ କିନ୍ତୁ ଏ ପରମ୍ପରା ପ୍ରବର୍ତ୍ତନର ପ୍ରଚେଷ୍ଟାକୁ ସମ୍ପୂର୍ଣ୍ଣ ଭାବରେ ବାଦ ଦିଆଯାଇଥିଲା । ମୋଟ ଉପରେ ଶାନ୍ତିନିକେତନ ସତ୍ୟବାଦୀ ନୁହେଁ କି ସତ୍ୟବାଦୀ ଶାନ୍ତିନିକେତନ ନୁହେଁ । ଉଭୟ ବିଦ୍ୟାଳୟର ଭିତ୍ତିଭୂମି ସମ୍ପୂର୍ଣ୍ଣ ଭିନ୍ନଥିଲା ।

୨

ସମଷ୍ଟି ନୁହେଁ ବ୍ୟଷ୍ଟି ହେଉଛି ଶାନ୍ତିନିକେତନ ସାଧନାର କେନ୍ଦ୍ରବିନ୍ଦୁ । ଶାନ୍ତିନିକେତନ ବିଦ୍ୟାଳୟର ପ୍ରାଣ ପ୍ରତିଷ୍ଠାତା ରବୀନ୍ଦ୍ରନାଥ ଜଣେ ବ୍ୟକ୍ତି,



Digitized by PPRACHIN, SOA

ଏକ ଗୋଷ୍ଠୀ ନୁହନ୍ତି । ପୁଣି ପୁଅ ରଥୀନ୍ଦ୍ରନାଥଙ୍କ ପାଇଁ ଉନ୍ନତ ଶିକ୍ଷାର ବ୍ୟବସ୍ଥା କରିବା ରବୀନ୍ଦ୍ରନାଥଙ୍କର ଶାନ୍ତିନିକେତନ ବିଦ୍ୟାଳୟ ସ୍ଥାପନର ଅନ୍ୟତମ ଉଦ୍ଦେଶ୍ୟ ଥିଲା । ମୋଟ ଉପରେ ଏହି ବିଦ୍ୟାଳୟ ସ୍ଥାପିତ ହୋଇଥିଲା ବ୍ୟକ୍ତି ଦ୍ୱାରା ଓ ବ୍ୟକ୍ତି ପାଇଁ । ତେଣୁ ବ୍ୟକ୍ତି କୈନ୍ଦ୍ରିକତା ଶାନ୍ତିନିକେତନ ଶିକ୍ଷାପ୍ରଣାଳୀର ଏକ ମୁଖ୍ୟ ସ୍ୱଭାବ । ବାହାରର ମୁକ୍ତି ଅପେକ୍ଷା ଅନ୍ତରର ମୁକ୍ତି । ବହିର୍ବିକାଶ ଅପେକ୍ଷା ଅନ୍ତରର ବିକାଶ ବା ଆତ୍ମବିକାଶ ହେଲା ଶାନ୍ତିନିକେତନର ସାଧନା । ସମାଜ ପାଇଁ ଆତ୍ମତ୍ୟାଗ ନୁହେଁ ଆତ୍ମ ଆବିଷ୍କାର ହେଲା ଶାନ୍ତିନିକେତନ ଶିକ୍ଷାର ଆଦର୍ଶ । ଆଜି ଠିକ୍ ଏହି କାରଣରୁ ଶାନ୍ତିନିକେତନରେ ସମାଜ ସଚେତନତାର ଘୋର ଅଭାବ, ସମାଜସହ ଯୋଗସୂତ୍ର ଅତ୍ୟନ୍ତ କ୍ଷୀଣ । ସମାଜର ଉଦ୍ଗ୍ରାସନ ରୂପକ୍ଷୀ ଶାନ୍ତିନିକେତନ ପକ୍ଷରେ ଏକମାତ୍ର ସତ୍ୟ । କର୍ମ କୋଳାହଳ ମୁଖରୁ ସମାଜ ଶାନ୍ତି ଓ ସାନ୍ତ୍ୱନାର ଆଧାର ନୁହେଁ, ଉତ୍ସ ନୁହେଁ । ତେଣୁ ସମାଜଠାରୁ ଦୂରକୁ ପଳାୟନ କରିବା ହେଉଛି ଏକମାତ୍ର ପନ୍ଥା, ଶାନ୍ତିନିକେତନର ସାଧନାରେ ଏହି ସତ୍ୟକୁ ସ୍ୱୀକୃତ ଦିଆଯାଇଥିଲା । ରବୀନ୍ଦ୍ରନାଥ ବାରମ୍ବାର ପ୍ରକାଶ କରିଥିଲେ "କଲିକତାର ଭିଡ଼େ ଆମାର ଜୀବନଟା ନଷ୍ଟ ହୟେ ଥାକେ ।" "କଲିକତାର ଅବର୍ଜନାର ମଧ୍ୟେ ଅର ଝୁଟୁ ଥେଇ ଫିରେତେ ଇଚ୍ଛା କରେ ନା ।" ଫଳରେ ସମାଜର ନିଷ୍ଠୁର ବାସ୍ତବତା, କର୍ମ କୋଳାହଳ, ଦୁଃଖ, ଦୈନ୍ୟ; ବିରୋଧ ଓ ସଂଘାତଠାରୁ ଦୂରରେ ଉନ୍ମୁକ୍ତ ପ୍ରକୃତିର ଦେହ, ସ୍ପର୍ଶ, ରୂପ, ରସ, ଗନ୍ଧର କାରାଗାରର ଚତୁର୍ଭୂମିକୁ ସିକ୍ତ କରି ବ୍ୟକ୍ତିର ସ୍ୱାଧୀନ ଓ ସ୍ୱାଭାବିକ ବିକାଶର ତପସ୍ୟା ହେଉଛି ଶାନ୍ତିନିକେତନର ତପସ୍ୟା ଧ୍ୟାନସ୍ଥ ଓ ଆତ୍ମସମାହିତ ହେବାର ତପସ୍ୟା ଶାନ୍ତିନିକେତନର ତପସ୍ୟା ।

ନାନାଦି କାରଣରୁ ରବୀନ୍ଦ୍ରନାଥ ଯେତେବେଳେ ସାମସାମୟିକ କୌଣସି ପତ୍ରିକାରେ ଲେଖିବେ ନାହିଁ ବୋଲି ସ୍ଥିର କଲେ ସେତେବେଳେ ପ୍ରଥମ ଚୌଧୁରୀଙ୍କ ସମ୍ପାଦନାରେ ଓ ରବୀନ୍ଦ୍ରନାଥଙ୍କ ଆଶୀର୍ବାଦରେ ଶାନ୍ତିନିକେତନରୁ ପ୍ରକାଶିତ ହେଲା 'ସବୁଜପତ୍ର ।' ଏହି 'ସବୁଜପତ୍ର' ନାମକରଣ ମଧ୍ୟରେ ଚିର ସବୁଜ ରବୀନ୍ଦ୍ର ମାନସର ପ୍ରତିଫଳନ ପରିଲକ୍ଷିତ ହୁଏ । ବ୍ୟକ୍ତିର ସ୍ୱାଭାବିକ ବିକାଶ ସମାଜ ମଧ୍ୟରେ ନୁହେଁ, ପ୍ରକୃତି ମଧ୍ୟରେହିଁ ସମ୍ଭବ । ତେଣୁ ସମାଜର କର୍ମ କୋଳାହଳରୁ ଆତ୍ମ ରକ୍ଷାକରି ଦେହ, ସ୍ପର୍ଶ, ରୂପ-ରସ ଗନ୍ଧମୟୀ ପ୍ରକୃତି ଦେବୀର ପୂଜ୍ୟପୀଠରେ ଶୈଶବ ଓ କୈଶୋର ସବୁଜ ମନକୁ ଚିର ସବୁଜ ରଖିବାର ସାଧନା ହେଉଛି ଶାନ୍ତିନିକେତନର ସାଧନା । ୧୯୩୩ରେ ଅମେରିକାରୁ ଏକ ଚିଠିରେ ରବୀନ୍ଦ୍ରନାଥ ଲେଖିଥିଲେ, "ଆମାଦେର ବିଦ୍ୟାଳୟର ଏଇ ଏକଟି ବିଶେଷତ୍ୱ ଆଛେ ଯେ ବିଶ୍ୱପ୍ରକୃତିର ସଙ୍ଗେ ଅଖଣ୍ଡ ଯୋଗେ ଆମରା ଛେଲେଦେର ମାନୁଷ କରତେ ଚାଇ । କତକ ଗୁଲି ବିଶେଷ ଶକ୍ତିର ଉଗ୍ର ବିକାଶ-ନୟ, କିନ୍ତୁ ଗୁରୁଜନଦେର ସଙ୍ଗେ ଚିତ୍ତର ମିଲନେର ଦ୍ୱାରା ପ୍ରକୃତିର ପୂର୍ଣ୍ଣତା ସାଧନା ଆମାଦେର ଉଦ୍ଦେଶ୍ୟ ।" ତେଣୁ ଗୃହ ପ୍ରାଚୀର ମଧ୍ୟରେ ଆବଦ୍ଧ ନ ରହି ମୁକ୍ତ ପ୍ରାକୃତିକ ପରିବେଶରେ ଅଧ୍ୟୟନ ଓ ଅଧ୍ୟାପନା ଶାନ୍ତିନିକେତନ ଶିକ୍ଷାନୀତିର ଅନ୍ୟ ଏକ ମୁଖ୍ୟ ବିଭାଗ ।

"ମୋଦେର ତରୁ ମୂଲେର ମେଲା
ମୋଦେର ଖୋଲା ମାଠେର ଖେଲା
ମୋଦେର ନୀଲ ଗଗନେର ସୋହାଗ
ମାଖା ସକାଲ ସନ୍ଧ୍ୟାବେଲା ।
ମୋଦେର ଶାଲେର ଛାୟା ବୀଥି
ବାଜାୟ ବନେର କଲ ଗୀତି
ମୋଦେର ପାତାୟ ନାଚେ
ମେତେ ଆଛେ ଆମଲକୀ କାନନ ।"

ହେଉଛି ଶାନ୍ତିନିକେତନ ଶିକ୍ଷାପ୍ରଣାଳୀର ଏକ ଗୁରୁତ୍ୱପୂର୍ଣ୍ଣ ଦିଗ । ସମାଜ ନୁହେଁ ପ୍ରକୃତିସହ



Digitized by PPRACHIN, SOA

ଏକାତ୍ମ ହେବା ଶାନ୍ତିନିକେତନ ସାଧନାର ଅଙ୍ଗ । ବୃକ୍ଷରୋପଣ, ବର୍ଷାମଙ୍ଗଳ, ଓ ଶାରଦୋତ୍ସବ ପ୍ରଭୃତି ମଧ୍ୟରେ ଏ ଆଦର୍ଶର ବ୍ୟଞ୍ଜନା ସ୍ପଷ୍ଟ ।

ଶାନ୍ତିନିକେତନ ଶିକ୍ଷାପ୍ରଣାଳୀର ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଦିଗ ହେଲା ସ୍ୱାଧୀନତା । ରବୀନ୍ଦ୍ରନାଥଙ୍କର ରୋମାଣ୍ଟିକ୍ ବିପ୍ଳବୀ ମନ ଶୃଙ୍ଖଳାର ନିଗଡ଼ ମଧ୍ୟରୁ ସବୁବେଳେ ପଳାୟନର ସୁଯୋଗ ଖୋଜି ବୁଲୁଥିଲା । ସେଥିପାଇଁ ଶାନ୍ତିନିକେତନ ଶିକ୍ଷାପ୍ରଣାଳୀର ମୂଳମନ୍ତ୍ର ଥିଲା ନିରାନନ୍ଦମୟ ସଂଯମ ଓ ଶୃଙ୍ଖଳା ନୁହେଁ, ସ୍ୱାଧୀନତା ଓ ଆନନ୍ଦ । ଅବଶ୍ୟ ସ୍ୱାଧୀନତା କହିଲେ ସ୍ୱେଚ୍ଛାଚାରିତା, ନିୟମହୀନତା ବା ଅସଂଯମ ନୁହେଁ । ତେବେ ଆନନ୍ଦହୀନ ସଂଯମ ଓ ବିଚାରହୀନ ଆଚାର ଶାନ୍ତିନିକେତନ ଶିକ୍ଷାପ୍ରଣାଳୀରେ ସମ୍ପୂର୍ଣ୍ଣଭାବେ ପରିତ୍ୟକ୍ତ ହୋଇଥିଲା । ନିୟମ ଓ ନୀତି ନୈତିକର ନାଗପାଶ ମଧ୍ୟରେ ବ୍ୟକ୍ତିର ସ୍ୱାଧୀନ ଓ ସ୍ୱାଭାବିକ ବିକାଶ ସମ୍ଭବ ନୁହେଁ—ଏହାହିଁ ଶାନ୍ତିନିକେତନ ସାଧନାର ପ୍ରତିପାଦ୍ୟ। ଆଚାର ବିରୁଦ୍ଧରେ ବିପ୍ଳବର ବାଣୀ 'ଅଚଳାୟତନ' ନାଟକରେ ପ୍ରତିଫଳିତ ହୋଇଛି । 'ସବୁଜେର ଅଭିଯାନ' କବିତାରେ ମଧ୍ୟ ପୁରାତନ ଓ ଶୃଙ୍ଖଳା ବିରୁଦ୍ଧରେ ବିପ୍ଳବର ବାଣୀ ରୂପାୟିତ ହୋଇଛି । ଏହା ହେଉଛି ଶାନ୍ତିନିକେତନର ଆଦର୍ଶ ।

ଶାନ୍ତିନିକେତନ ଶିକ୍ଷାପ୍ରଣାଳୀରେ ଅଧ୍ୟୟନସହ କ୍ରିୟାଶୀଳତାର ସ୍ଥାନ ମଧ୍ୟ ଥିଲା । ତେବେ ସେ କ୍ରିୟାଶୀଳତା ମଧ୍ୟରେ ଭବିଷ୍ୟତରେ ଅର୍ଥୋପାର୍ଜନର ଯୋଜନା ନ ଥିଲା; ଥିଲା ସୌନ୍ଦର୍ଯ୍ୟ ସୃଷ୍ଟି ପାଇଁ ପ୍ରେରଣା । ବୈଷୟିକ ଶିକ୍ଷା ନୁହେଁ ଗୃହକଳା ଓ ଚାରୁକଳା ଉପରେ ଗୁରୁତ୍ୱ ହିଁ ଶାନ୍ତିନିକେତନ ଶିକ୍ଷାପ୍ରଣାଳୀର ବିଶେଷତ୍ୱ । ସେଥିପାଇଁ ଗୀତ, ନାଟ୍ୟ ଓ ଶିଳ୍ପବିଦ୍ୟା ପ୍ରଭୃତି ଥିଲା ଶାନ୍ତିନିକେତନ ଶିକ୍ଷାପ୍ରଣାଳୀର ସ୍ୱୀକୃତ ଅଙ୍ଗ । ରବୀନ୍ଦ୍ରନାଥ ନିଜେ ବିଭିନ୍ନ ନାଟକର ଅଭିନୟରେ ବିଭିନ୍ନ ଭୂମିକାରେ ଅବତୀର୍ଣ୍ଣ ହେଉଥିଲେ, ସଙ୍ଗୀତ ଶିକ୍ଷା ମଧ୍ୟ ଦେଉଥିଲେ । କବି ଗୁରୁଙ୍କର ଉଦାତ୍ତ କଣ୍ଠସ୍ୱରରେ ଶାନ୍ତିନିକେତନର ବାୟୁମଣ୍ଡଳ ମୁଖରିତ ହୋଇ ଉଠୁଥିଲା । କେବଳ ପାଣ୍ଡିତ୍ୟ ଅର୍ଜନ ଶାନ୍ତିନିକେତନ ଶିକ୍ଷାର ଆଦର୍ଶ ନ ଥିଲା । କାରଣ ପାଣ୍ଡିତ୍ୟ ଅର୍ଜନ ଭିତରେ ଜୀବନର ସ୍ୱାଧୀନ, ସ୍ୱାଭାବିକ ଓ ସାମୂହିକ ବିକାଶ ଘଟି ନ ପାରେ ।

ଜୀବନର ସାମୂହିକ ବିକାଶ ବଡ଼ କଥା ଓ ଶାନ୍ତିନିକେତନ ଶିକ୍ଷାପ୍ରଣାଳୀରେ ତା'ର ଗୁରୁତ୍ୱ ଥିଲା । ରୂଢ଼ ବାସ୍ତବତାଠାରୁ ଦୂରରେ ଶାନ୍ତିନିକେତନର ସବୁଜଶ୍ରୀ ମଧ୍ୟରେ ଅନ୍ତେବାସୀର ମନରେ ସ୍ୱପ୍ନରଚନା ଓ ସ୍ୱପ୍ନଚାରଣାର ଯଥେଷ୍ଟ ସୁଯୋଗ ମିଳୁଥିଲା ।

ଶାନ୍ତିନିକେତନ ସାଧନା ପ୍ରେରଣାର ଉତ୍ସ ଥିଲା ପ୍ରାଚୀନ ଭାରତର ତପୋବନ, ଋଷି ଆଶ୍ରମ । ଶାନ୍ତିନିକେତନ ବିଦ୍ୟାଳୟ ସ୍ଥାପନ କରିବା ସମୟରେ ରବୀନ୍ଦ୍ର ମାନସଲୋକରେ ପ୍ରାଚୀନ ଗୁରୁକୁଳ ଆଶ୍ରମର ସ୍ମୃତି ଜୀବନ୍ତ ଥିଲା । ଫଳରେ ଅତୀତକୁ ଫେରିଯିବାର, ଅତୀତକୁ ପୁନରୁଜ୍ଜୀବିତ କରିବାର ପ୍ରବୃତ୍ତି ଶାନ୍ତିନିକେତନ ସାଧନାରେ ପ୍ରତିବିମ୍ବିତ ହୋଇଥିଲା । ଗାୟତ୍ରୀ ଆଦି ବୈଦିକ ମନ୍ତ୍ରର ଶିକ୍ଷା ଓ ଆବୃତ୍ତି ମଧ୍ୟରେ, ଛାତ୍ରମାନଙ୍କ ମଧ୍ୟରେ ପ୍ରଚଳିତ ଥିବା ବର୍ଣ୍ଣ-ବୈଷମ୍ୟ ନୀତି ମଧ୍ୟରେ ଏହା ଲକ୍ଷ୍ୟ କରାଯାଇପାରେ । ଏପରିକି ୧୯୧୫ରେ ମହାତ୍ମାଗାନ୍ଧୀ ଯେତେବେଳେ ଶାନ୍ତିନିକେତନ ଆସିଲେ ସେତେବେଳେ ଶାନ୍ତିନିକେତନରେ ଏହି ବର୍ଣ୍ଣବୈଷମ୍ୟ ନୀତି ପ୍ରଚଳିତ ଥିଲା । ବିଭିନ୍ନ ବର୍ଣ୍ଣ ବା ଜାତିର ଛାତ୍ରମାନେ ଏକତ୍ର ଏକ ପଂକ୍ତିରେ ଭୋଜନ ନ କରି ପୃଥକ ପୃଥକ ଭାବରେ ଭୋଜନ କରୁଥିଲେ । ଶୃଙ୍ଖଳା ଓ ଆଚାର ବିରୁଦ୍ଧରେ ସମସ୍ତ ବିପ୍ଳବ ଭିତରେ ପ୍ରାଚୀନତାପ୍ରତି ଏହି ମୋହ ଓ ସମାଜ ସଚେତନତାର ଅଭାବ ଲକ୍ଷ୍ୟ କରିବାର କଥା ।



Digitized by PPRACHIN, SOA

— ୩ —

ସତ୍ୟବାଦୀ ବିଦ୍ୟାଳୟ କାହାର ଜଣକର ନ ଥିଲା, ଥିଲା ସତ୍ୟବାଦୀ ଗୋଷ୍ଠୀର । ସତ୍ୟବାଦୀ ବିଦ୍ୟାଳୟ ସ୍ଥାପନର ଅନ୍ୟତମ ଉଦ୍ଦେଶ୍ୟ ଥିଲା ଦେଶରେ ସମୃଦ୍ଧ ଶିକ୍ଷା ବିସ୍ତାର ଓ ଦେଶର ଉନ୍ନତି । ସମଷ୍ଟି ପାଇଁ ବ୍ୟକ୍ତିର ଆତ୍ମତ୍ୟାଗ ସତ୍ୟବାଦୀ ସାଧନାର ମୂଳମନ୍ତ୍ର । ବ୍ୟକ୍ତି ନୁହେଁ ସମାଜ-ବ୍ୟଷ୍ଟି ନୁହେଁ ସମଷ୍ଟି ହେଉଛି ସତ୍ୟବାଦୀ ସାଧନାର କେନ୍ଦ୍ରବିନ୍ଦୁ । ତେଣୁ ସମାଜ ସଚେତନତାର ପ୍ରତିଫଳନ ସତ୍ୟବାଦୀ ଶିକ୍ଷା-ପ୍ରଣାଳୀର ସ୍ତରେ ସ୍ତରେ ଆବିଷ୍କାର କରାହୁଏ । ସମସାମୟିକ ସାମାଜିକ ଆନ୍ଦୋଳନ ଓ ଆଲୋଡ଼ନର ପ୍ରାଣକେନ୍ଦ୍ର ଥିଲା ସତ୍ୟବାଦୀ ବିଦ୍ୟାଳୟ । ପୁଣି ଶିକ୍ଷକ ନୀଳକଣ୍ଠଙ୍କର ନାଶ ଥିଲା ତା'ର ପ୍ରତୀକ । ତେଣୁ ସମସାମୟିକ ସାମାଜିକ ଆନ୍ଦୋଳନ ନାଶ ଆନ୍ଦୋଳନ ନାମରେ ଖ୍ୟାତ । ପୁରାତନ ରକ୍ଷଣଶୀଳ ଘୋର ଶାସନ ମଧ୍ୟରେ ଥାଇ ମଧ୍ୟ ସତ୍ୟବାଦୀ ବିଦ୍ୟାଳୟରେ ପ୍ରଥମରୁ ବର୍ଣ୍ଣବୈଷମ୍ୟ ନୀତି ଉଠିଯାଇଥିଲା । ଛାତ୍ରମାନେ ଏକାଠି ବସି ଭୋଜନ କରୁଥିଲେ । ସେଥିରେ ଜାତିଭେଦର ପ୍ରଶ୍ନ ନ ଥିଲା । ପୁଣି ଅଗ୍ନି, ବନ୍ୟା, ମହାମାରୀ ପ୍ରପୀଡ଼ିତ ଜନତାର ସେବା ପାଇଁ ଶିକ୍ଷକ-ମାନଙ୍କ ନେତୃତ୍ୱରେ ସତ୍ୟବାଦୀର ଛାତ୍ରମାନେ ଅଣ୍ଟାଭିଡ଼ି ବାହାରି ପଡ଼ୁଥିଲେ । ସମସ୍ତ ପ୍ରକାର ସାମାଜିକ ଦୁଃଖ, ଦୈନ୍ୟ, କର୍ମକୋଳାହଳ, ବିରୋଧ ଓ ସଂଘାତ ମଧ୍ୟରେ ସତ୍ୟବାଦୀର ସାଧନା । ସେବା (Relief) ଓ ସଂସ୍କାର (Reform) ଥିଲା ଏ ସାଧନାର ମୂଳମନ୍ତ୍ର । କର୍ମକ୍ଷେତ୍ର ଥିଲା ସମାଜ, । ସତ୍ୟବାଦୀରୁ ପ୍ରକାଶିତ ହେଉଥିବା 'ସମାଜ' ନାମକରଣ ମଧ୍ୟରେ ସତ୍ୟବାଦୀ ଗୋଷ୍ଠୀର ଏହି ସମାଜ ସଚେତନ ମନର ପ୍ରତିଫଳନ ସ୍ପଷ୍ଟ । ସମାଜ ସହ ସତ୍ୟବାଦୀ ଗୋଷ୍ଠୀର ଯୋଗ ଥିଲା ଅତ୍ୟନ୍ତ ନିବିଡ଼ । ଜଗନ୍ନାଥ ଧର୍ମ ପ୍ରସଙ୍ଗରେ ପଣ୍ଡିତ ନୀଳକଣ୍ଠ କହନ୍ତି "ସମାଜ ହେଉଛି ମାନବ ବ୍ୟକ୍ତିର ସେଇ ଜଗତ, ସେଇ ସମାଜ ଜଗତର ଧର୍ମଶୃଙ୍ଖଳା ଭିତରେ ନିଜକୁ ନିର୍ବିକଳ୍ପ ଭାବରେ ଓ ଅବାଧରେ ମିଶାଇ ଦେବାର କର୍ମ ହେଉଛି ଜଗନ୍ନାଥ ଧର୍ମ ।" ସତ୍ୟବାଦୀ ସାଧନାରେ ଏହି ଆଦର୍ଶର, ଏହି ଜଗନ୍ନାଥ ଧର୍ମର ବ୍ୟଞ୍ଜନା ଦେଖିବାପାଇଁ ମିଳେ । ଏପରି ଅପ୍ରାସଙ୍ଗିକ ହେଲେ ମଧ୍ୟ କହିଦେବାର ଅଛି ଯେ ଏହି ସେବା (Relief) ଓ ସଂସ୍କାର (Reform) କେବେ ରବୀନ୍ଦ୍ରନାଥଙ୍କର ବା ଶାନ୍ତିନିକେତନ ସାଧନାର ଆଦର୍ଶ ନ ଥିଲା । କିନ୍ତୁ ଆତ୍ମ ଆବିଷ୍କାର ନୁହେଁ ସମଷ୍ଟିପାଇଁ ଆତ୍ମତ୍ୟାଗ ସାଧନା, ସମାଜସହ ଏକାତ୍ମ ହେବାର ସାଧନା ହେଉଛି ସତ୍ୟବାଦୀ ସାଧନା ।

ପୁଣି ଜାଣି ରଖିବାର କଥା ମୂଳରୁ ସତ୍ୟବାଦୀରେ ବନବିଦ୍ୟାଳୟ ବା ମୁକ୍ତ ପ୍ରାକୃତିକ ପରିବେଶରେ ଅଧ୍ୟାପନାର ପରିକଳ୍ପନା ବା ଯୋଜନା ସତ୍ୟବାଦୀର ପ୍ରାଣ ପ୍ରତିଷ୍ଠାତାମାନଙ୍କ ମନରେ ନ ଥିଲା । ପଣ୍ଡିତ ହରିହରଙ୍କର ସ୍ମୃତିରୁ ସତ୍ୟବାଦୀର ବକୁଳ ଓ କୁଶିଅନା ବନରେ ବିଦ୍ୟାଳୟ ସ୍ଥାପନର ପ୍ରେରଣା ଦେଇଥିଲା । ପୁଣି ୧୯୧୨ରେ ନାଶ ଆନ୍ଦୋଳନ ସମୟରେ କେତେ ରକ୍ଷଣଶୀଳ ବ୍ୟକ୍ତି ବିଦ୍ୟାଳୟ ଗୃହରେ ଅଗ୍ନିସଂଯୋଗ କରିବା ପୂର୍ବରୁ ଖଡ଼ଘର ଗୃହ ମଧ୍ୟରେହିଁ ଅଧ୍ୟାପନା କରାଯାଉଥିଲା । ପୁଣି ବିଦ୍ୟାଳୟ ଗୃହଟି ପୋଡ଼ି ନ ଯାଇଥିଲେ କେବଳ ମୁକ୍ତ ପ୍ରାକୃତିକ ପରିବେଶରେ ଅଧ୍ୟାପନା କରାଯାଇ ଥାନ୍ତା କି ନାହିଁ ସନ୍ଦେହଜନକ । ତେଣୁ ସତ୍ୟବାଦୀ ବିଦ୍ୟାଳୟର ବନବିଦ୍ୟାଳୟରେ ପରିଣତି ଏକ ଆକସ୍ମିକ ଘଟଣା (historical accident) ମାତ୍ର । ଏ ପ୍ରସଙ୍ଗରେ ସ୍ମରଣ ହେବାର କଥା ଯେ, ସ୍କୁଲ ଘରପୋଡ଼ି ସମ୍ବାଦ ପାଇ ଗୋପବନ୍ଧୁ ଯେତେବେଳେ ବାଣପଡ଼ାରୁ ଆସି ସତ୍ୟବାଦୀରେ ପହଞ୍ଚିଲେ, ସେତେବେଳେ ବିଷର୍ଣ୍ଣ ଶିକ୍ଷକମାନଙ୍କୁ ଉତ୍ସାହ ଉଦ୍ଦୀପନା ଦେଇ ସେ କହିଥିଲେ, "ଏଥିପାଇଁ ଦୁଃଖ କ'ଣ ? ଭଗବାନଙ୍କର ଇଚ୍ଛା ଥିବ ଏ ବିଦ୍ୟାଳୟ ପାଇଁ କୋଠାଘର ହେବ ।" ମୁକ୍ତ ଆକାଶ ଓ ମୁକ୍ତ ବତାସର ଉପଯୋଗିତା ନୁହେଁ ଆବଶ୍ୟକତାହିଁ



Digitized by PPRACHIN, SOA

ସତ୍ୟବାଦୀ ବନବିଦ୍ୟାଳୟର ଜନନୀ । ସେଠି ହିଁ ଏହି ତା'ର ଜନ୍ମସାର୍ଥକତା ଉପଲବ୍ଧି କରାଗଲା । କିନ୍ତୁ ସତ୍ୟବାଦୀରେ ... ଶାନ୍ତିନିକେତନ ପରି ମୁକ୍ତ ପରିବେଶ ଉପରେ ଏତେ ଗୁରୁତ୍ୱ ଦିଆ ଯାଉନାହିଁ ।

ସବୁ ସମାଜ ସଂସ୍କାର ଓ ସାମାଜିକ ଆନ୍ଦୋଳନ ଅଭିଯାନର ପ୍ରାଣକେନ୍ଦ୍ର, ସତ୍ୟବାଦୀ ବିଦ୍ୟାଳୟର ଏକ ଗୁରୁତ୍ୱପୂର୍ଣ୍ଣ ଦିଗ ହେଉଛି କଠୋର ଶୃଙ୍ଖଳା ଓ ସଂଯମର ଅଭ୍ୟାସ । ଦେଶର ଜନନୀ ପାଇଁ ଶୃଙ୍ଖଳିତ ନାଗରିକ ଗଢ଼ିବାହିଁ ସତ୍ୟବାଦୀ ବିଦ୍ୟାଳୟର ଅନ୍ୟତମ ଲକ୍ଷ୍ୟ ଥିଲା । ସେବା ଓ ସଂସ୍କାର ମଧ୍ୟରେ ମଧ୍ୟ ଶୃଙ୍ଖଳା ଲୋଡ଼ା । ଶୃଙ୍ଖଳା ଭିତରେ କର୍ମର ଓ ଆତ୍ମତ୍ୟାଗର ଦୀକ୍ଷା ନେଇ ସମାଜସହ ଏକାତ୍ମ ହେବା ସମ୍ଭବ । ସଂଯମ ଓ ଶୃଙ୍ଖଳା ସବୁ ସମୟରେ ଆନନ୍ଦଦାୟକ ନ ହୋଇପାରେ, କିନ୍ତୁ ସେଥିପାଇଁ ସଂଯମ ଶୃଙ୍ଖଳାକୁ ପରିତ୍ୟାଗ କରିବା ସ୍ପୃହଣୀୟ ନୁହେଁ ଏହାହିଁ ଥିଲା ସତ୍ୟବାଦୀ ଶିକ୍ଷାପ୍ରଣାଳୀର ସ୍ୱୀକୃତ ଆଦର୍ଶ । ସମସ୍ତ ବିପ୍ଳବ ମଧ୍ୟରେ ମଧ୍ୟ ଶୃଙ୍ଖଳା ଓ ସଂଯମର ଆବଶ୍ୟକତା ସତ୍ୟବାଦୀ ଶିକ୍ଷାପ୍ରଣାଳୀରେ ଗ୍ରହଣ କରାଯାଇଥିଲା । ତେଣୁ କଠୋର ସଂଯମ, ଶୃଙ୍ଖଳାରୂପ ପାଇଥିଲା ସତ୍ୟବାଦୀର ଦୈନନ୍ଦିନ ଜୀବନଯାପନ ପ୍ରଣାଳୀରେ । ସତ୍ୟବାଦୀ ବିଦ୍ୟାଳୟର କାର୍ଯ୍ୟାବଳୀ ମଧ୍ୟରେ ତା'ର ନିଦର୍ଶନ ପରିଲକ୍ଷିତ ହୁଏ ।

ସ୍ୱାବଲମ୍ବନଶୀଳତା ଓ ନିର୍ଭରଶୀଳତା ସତ୍ୟବାଦୀ ଶିକ୍ଷାନୀତିର ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଦିଗ । "ନିଜ କାମ ନିଜେ କର" ଥିଲା ସତ୍ୟବାଦୀ ଶିକ୍ଷାନୀତିର ଆଦର୍ଶ । ଯଦିଓ ଏଥିପାଇଁ ସତ୍ୟବାଦୀରେ ସାଧାରଣ ଶିକ୍ଷାକୁ କେବେ ଗୁରୁତ୍ୱହୀନ ବୋଲି ମନେ କରାଯାଉ ନ ଥିଲା । 'ନିଜ କାମ ନିଜେ କର' ମନ୍ତ୍ରରେ ଦୀକ୍ଷିତ ହୋଇ, ଛାତ୍ରମାନେ କେବଳ ଛାତ୍ରାବାସର ଅଧିକାଂଶ କାମ ନିଜ ହାତରେ କରୁଥିଲେ, ତା' ନୁହେଁ, ବିଦ୍ୟାଳୟର ଗୃହନିର୍ମାଣରେ ପ୍ରତ୍ୟକ୍ଷଭାବରେ ସାହାଯ୍ୟ ଓ ସହଯୋଗ କରୁଥିଲେ । ପୁଣି ଭବିଷ୍ୟତରେ ଗୃହସ୍ଥ ନ କରି ମଧ୍ୟ ସ୍ୱାଧୀନ ଭାବରେ ଜୀବିକାର୍ଜନ କରି ସ୍ୱାବଲମ୍ବୀ ହେବାର ପ୍ରେରଣା ସତ୍ୟବାଦୀର ବୈପ୍ଳବିକ ଶିକ୍ଷାଦର୍ଶରେ ଥିଲା । ତେବେ ଏଥିପାଇଁ ମହାତ୍ମାଗାନ୍ଧୀଙ୍କର "ନଇ ତାଲିମ୍" ବା "ମୌଳିକ ଶିକ୍ଷା"ରେ ସାଧାରଣ ଅଧ୍ୟୟନ ଓ ଶିକ୍ଷା ଯେପରି ଗୁରୁତ୍ୱହୀନ ହୋଇ ପଡ଼ିଥିଲା, ସତ୍ୟବାଦୀ ଶିକ୍ଷାନୀତିରେ ତା'ର ସୂଚନା ଆଦୌ ନ ଥିଲା । ସତ୍ୟବାଦୀର ଛାତ୍ରମାନେ ସ୍ଥଳତଃ ଥିଲେ ଜ୍ଞାନ ତାପସ । ତେବେ ମାସିକ ଶ୍ରମ ସହ ଶାରୀରିକ ଶ୍ରମ ଓ ବୁଦ୍ଧିଦୀପ୍ତ ଶକ୍ତିର ମଧୁର ସମନ୍ୱୟର ପରିକଳ୍ପନା କରାଯାଇ ଥିଲା ସତ୍ୟବାଦୀର ଶିକ୍ଷାନୀତିରେ । ପୁଣି ସତ୍ୟବାଦୀର ଛାତ୍ରମାନେ ଯେପରି ଆଳସ୍ୟ ପରାୟଣ ନ ହେବେ, ଭବିଷ୍ୟତରେ ଶାରୀରିକ ଶ୍ରମକୁ ଘୃଣା ନ କରିବେ ଓ ଚାକିରିକୁ ଜୀବିକାର୍ଜନର ଏକମାତ୍ର ପନ୍ଥା ବୋଲି ନ ଭାବିବେ ତା ଥିଲା ଏସବୁ ପରିକଳ୍ପନାର ମୂଳରେ ।

ସତ୍ୟବାଦୀର ସଙ୍ଗୀତ ଓ ଚିତ୍ରକଳା ଶିକ୍ଷାର, ବିଶେଷ ବ୍ୟବସ୍ଥା କରାଯାଇଥିଲେ ମଧ୍ୟ, ସତ୍ୟବାଦୀରେ ମଝିରେ ମଝିରେ ନାଟକ ଅଭିନୀତ ହେଉଥିଲେ ମଧ୍ୟ ଶାନ୍ତିନିକେତନ ପରି ଏସବୁ ଉପରେ ଏତେ ଗୁରୁତ୍ୱ ଆରୋପ କରାଯାଉ ନ ଥିଲା । ସତ୍ୟବାଦୀର ଶିକ୍ଷାପ୍ରଣାଳୀରେ, ସେ ସବୁର ସ୍ଥାନ ଥିଲା ଗୌଣ । ପୁଣି ସମାଜର ସେବା ଓ ସଂସ୍କାର ପାଇଁ ଓ ଦେଶର ଉନ୍ନତି ପାଇଁ ଶକ୍ତିର ଆବଶ୍ୟକତା ଉପଲବ୍ଧି କରାଯାଉଥିବାରୁ ସୌନ୍ଦର୍ଯ୍ୟ ସୃଷ୍ଟି ଅପେକ୍ଷା ଶକ୍ତି ସଂଗ୍ରହ ପାଇଁ ଅଧିକ ପ୍ରେରଣା ଦିଆଯାଉଥିଲା ସତ୍ୟବାଦୀରେ ।

ସତ୍ୟବାଦୀ ବିଦ୍ୟାଳୟର, ପ୍ରେରଣା ଉତ୍ସ ଥିଲା ଇଂଲଣ୍ଡର ହାରୋ, ଇଟନ ଓ ରଗବି ପ୍ରଭୃତି ବିଦ୍ୟାଳୟ ଓ ପୁନାର, ଫର୍ଗୁସନ କଲେଜ ବିଶେଷଭାବେ ଏଡ୍‌ୱିନ ଆର୍ନୋଲ୍ଡ (Edwin Arnold)ଙ୍କ ପିତା ରଗବି ବିଦ୍ୟାଳୟର ଯେଉଁ ସଂସ୍କାର ସାଧନ କରିଥିଲେ, ତା ଥିଲା ସତ୍ୟବାଦୀର ପ୍ରତିଷ୍ଠାତାମାନଙ୍କର ଆଲୋଚନାର ବିଷୟବସ୍ତୁ । ତେଣୁ, ସତ୍ୟବାଦୀ ବିଦ୍ୟାଳୟ ପ୍ରାଚୀନତାର ଆବର୍ତ୍ତନ



Digitized by PPRACHIN, SOA

ନ ହେବ ଭବିଷ୍ୟତର ଯୋଜନା ପ୍ରସ୍ତୁତ ହୋଇ ଥିଲା । ସେଥିପାଇଁ ପୁରାତନ ରକ୍ଷଣଶୀଳ ଶାସନ ଗୁଡ଼ିକର ମଧ୍ୟସ୍ଥଳରେ ରହି ମଧ୍ୟ ସତ୍ୟବାଦୀ ବିଦ୍ୟାଳୟରେ ଛାତ୍ରମାନେ ଜାତି ଧର୍ମ ନିର୍ବିଶେଷରେ ଏକ ପଙ୍କ୍ତିରେ ଭୋଜନ କରୁଥିଲେ । ସତ୍ୟବାଦୀ ବିଦ୍ୟାଳୟ ଥିଲା ନୂତନ ଆଲୋକର ପ୍ରାଣକେନ୍ଦ୍ର ।

— ୪ —

ଶାନ୍ତିନିକେତନର ଶିକ୍ଷାରେ, ଅତୀତର ସିଂହାବଲୋକନ ଓ ସତ୍ୟବାଦୀର ଶିକ୍ଷାରେ, ଭବିଷ୍ୟତର ପୂର୍ବଦୃଷ୍ଟି ଫୁଟିଥିଲା. ଆଦର୍ଶବାଦର ଭିତ୍ତିଭୂମି ଉପରେ । ଉଭୟ ବିଦ୍ୟାଳୟ ସ୍ଥାପିତ ଥିଲେ ମଧ୍ୟ ଶାନ୍ତିନିକେତନ ଆଦର୍ଶ ମୂଳରେ ଥିଲା ବ୍ୟକ୍ତି, ମୁକ୍ତି ଓ ସୌନ୍ଦର୍ଯ୍ୟ । କିନ୍ତୁ ସତ୍ୟବାଦୀ ଆଦର୍ଶ ମୂଳରେ ଥିଲା ସଂସ୍କୃତି, ଶକ୍ତି ଓ ସଂଯମ । ଶାନ୍ତିନିକେତନ ଆଦର୍ଶରେ ବାହାରର ବାସ୍ତବତାର କୌଣସି ସମ୍ପର୍କ ନ ଥିଲା କିନ୍ତୁ ସତ୍ୟବାଦୀର ଆଦର୍ଶରେ ବାସ୍ତବତାର ସମ୍ପର୍କ ଥିଲା ଅତ୍ୟନ୍ତ ନିବିଡ଼ । ତେଣୁ ସତ୍ୟବାଦୀର ସାଧନାରେ ଦେଶ ଓ କାଳର ପରିପ୍ରେକ୍ଷୀରେ ଭୂୟୋବିକାଶର ଧାରା ପ୍ରତିବିମ୍ବିତ ହୋଇଥିବା ସମୟରେ ଦେଶ ଓ କାଳର ପରିପ୍ରେକ୍ଷୀରୁ ମୁକ୍ତ କେବଳ ସାର୍ବଜନୀନ ଓ ସର୍ବକାଳୀନ ବିକାଶର ଧାରା ପ୍ରତିବିମ୍ବିତ ହୋଇଥିଲା ଶାନ୍ତିନିକେତନର ସାଧନାରେ । ତେଣୁ ଦେଶ ଓ କାଳଠାରୁ ଛାତ୍ରମାନଙ୍କୁ ବିଚ୍ଛିନ୍ନ କରି କେବଳ ମଣିଷରୂପେ ଶାନ୍ତିନିକେତନର ସାଧନା ଦେଖୁଥିଲା ଛାତ୍ରମାନଙ୍କୁ-ଦେଉଥିଲା ସେମାନଙ୍କ ମାନବୀୟ ଧର୍ମର ସ୍ୱତଃ ସ୍ଫୂର୍ତ୍ତ ସ୍ୱାଭାବିକ ବିକାଶର ସୁଯୋଗ । କିନ୍ତୁ ସତ୍ୟବାଦୀର ସାଧନା ଛାତ୍ରମାନଙ୍କୁ ଏକ ନିର୍ଦ୍ଦିଷ୍ଟ ଦେଶ ଓ କାଳର ଅଙ୍ଗରୂପେ ଦେଖୁଥିଲା-ଚେଷ୍ଟା କରୁଥିଲା ସେହି ନିର୍ଦ୍ଦିଷ୍ଟ ଦେଶ ଓ କାଳର ଆବଶ୍ୟକତା ଅନୁଯାୟୀ ସେମାନଙ୍କୁ ଗଢ଼ିବା ପାଇଁ । ଶାନ୍ତିନିକେତନ ଓ ସତ୍ୟବାଦୀର ସାଧନାରେ ଯଥାକ୍ରମେ ଭିତର ଓ ବାହାରର ଆବଶ୍ୟକତା ଉପରେ ଗୁରୁତ୍ୱ ଦିଆଯାଇଥିଲା । ଗୋଟିଏ ଥିଲା କବିର ଓ ଅନ୍ୟଟି ଥିଲା କର୍ମୀର ଆଶ୍ରମ ।

ପ୍ରାଧ୍ୟାପକ ଗଗନେନ୍ଦ୍ର ନାଥ ଦାସ
ଭଞ୍ଜ ବିହାର

(ବଂଶଧାରା ସାହିତ୍ୟ ସମାଜ, ଗୁଣୁପୁର ସୌଜନ୍ୟରୁ)

# ଭାରତୀୟ ସଂଗ୍ରାମ ଧାରାରେ ଗୋପବନ୍ଧୁ

ସୂତ, ଦୂତ, ଦନ୍ତ ଓ ପ୍ରତିଭାର ଅଭିପ୍ରେତ ଭୂମି ଭାରତ । ଫଳତଃ ସ୍ୱୟଂ ସୃଷ୍ଟ ଜାତୀୟ ଅନୁଷ୍ଠାନ ଗୋପବନ୍ଧୁ କେବଳ 'ଉତ୍କଳମଣି'ର କ୍ଷୁଦ୍ରତର ଉପାଧି ମଧ୍ୟରେ ସୀମିତ ହୋଇ ଯାଇଛନ୍ତି । "ଜାତିହାର ତାଙ୍କ ଉପରେ ଲେଖାଥିଲା ମଞ୍ଜି" ନ୍ୟାୟରେ ଓଡ଼ିଆ ପୁଅ ତାଙ୍କୁ ଅନ୍ତର୍ଜାତୀୟ ସ୍ତରକୁ ନେଇ ଯିବାର ପ୍ରୟାସ କରି ପାରିନି । ଯାହା ଦ୍ୱାରା ତାଙ୍କୁ କ୍ଷୁଦ୍ର ବୁଦ୍ଧି, ସଂକୀର୍ଣ୍ଣତା ସର୍ବସ୍ୱ. ପ୍ରାଦେଶିକ ମନୋଭାବ ସମ୍ପୂର୍ଣ୍ଣ ବ୍ୟକ୍ତି ବୋଲି କେତେକ ଆକ୍ଷେପ କରନ୍ତି । ଏହା ନିଶ୍ଚୟ ବଡ଼ ଚିନ୍ତାର କଥା ନୁହେଁ । ତାଙ୍କର ବଳିଷ୍ଠ ଚିନ୍ତାଧାରା ଓ ଦୂରଦୃଷ୍ଟି ସମାଲୋଚକମାନଙ୍କର ଆଖିର ପରଦାରେ ଛପି ଯାଇଥିବା ହେତୁ ଏହା ପ୍ରମାଦପୂର୍ଣ୍ଣ ମୂଲ୍ୟାୟନ ବା ଆକ୍ରୋଶମୂଳକ କୁତ୍ସା ବ୍ୟତୀତ ଅନ୍ୟ କିଛି କୁହାଯାଇ ନ ପାରେ ।

ଏକଥା ଦୃଢ଼ତାର ସହିତ କୁହାଯାଇ ପାରେ କି ଭାରତର ଯେ କୌଣସି ସ୍ୱାଧୀନତା ସଂଗ୍ରାମୀଙ୍କ



Digitized by PPRACHIN, SOA

ସହିତ ପଣ୍ଡିତ ଗୋପବନ୍ଧୁଙ୍କ ତୁଳନାତ୍ମକ ଭାବେ ବିଚାର କରାଯାଇପାରେ । ଭାରତର ତତ୍କାଳୀନ ବିଦେଶୀ ଶାସକଙ୍କର ଓଡ଼ିଶା ବିଦ୍ୱେଷ ମନୋଭାବ ଓ ଦେଢ଼ୋଣୀ ସ୍ୱରାଜ୍ୟର ତୁଙ୍ଗ ନେତାମାନଙ୍କର ଓଡ଼ିଶା ପ୍ରତି ଅବହେଳା ଗୋପବନ୍ଧୁଙ୍କୁ ତାଙ୍କର "ଗିରି ଶିଖରରୁ ରଖି ଗୁଳ୍ମବି ମୁଁ ନୀର"ର ଆଦର୍ଶ ଚ୍ୟୁତ କରି ପାରି ନ ଥିଲା । ୧୯୦୩ ମସିହାରେ ମାନ୍ଦ୍ରାଜର କଂଗ୍ରେସ ଅଧିବେଶନ ଗଞ୍ଜାମ ଜିଲ୍ଲାକୁ ବିଶାଖାପାଟଣା (ମାନ୍ଦ୍ରାଜ) ସହିତ ମିଶାଇଦେବା ସିଦ୍ଧାନ୍ତ ଉପରେ କ୍ଷୋଭ ପ୍ରକାଶ କରି ଉତ୍କଳ ଗୌରବ ମଧୁସୂଦନ କଂଗ୍ରେସ ପରିତ୍ୟାଗ କଲେ । କିନ୍ତୁ ଅଟଳ ଭଗବତ୍ ବିଶ୍ୱାସୀ, ସ୍ନେହ, ଦୟା, କ୍ଷମା, ଭକ୍ତି, ମୈତ୍ରୀ ଓ ସତ୍ୟ, ଶିବ ସୁନ୍ଦର ଆଦି ମାନବୀୟ ସଦ୍‌ଗୁଣର ମୂର୍ତ୍ତିମନ୍ତ ପ୍ରତୀକ ଗୋପବନ୍ଧୁ ତଥାକଥିତ ସ୍ୱାର୍ଥପରତା ଓ ପ୍ରାଦେଶିକତାକୁ ଜଳାଞ୍ଜଳି ଦେଇ ଭାରତର ମୁକ୍ତି ଆନ୍ଦୋଳନରେ ଝାସଦେଇ ଗାଇଥିଲେ—

"ଜାତୀୟ ମମତା ବିଶ୍ୱଜନ ପ୍ରୀତି
ଉତ୍କଳବାସୀର ହେଉ ଏହା ନୀତି"

ଏହି ପରିପ୍ରେକ୍ଷୀରେ ଗୋପବନ୍ଧୁଙ୍କ ବିଷୟରେ ଭାରତର ସ୍ୱାଧୀନତା ସଂଗ୍ରାମର ପ୍ରାଣପୁରୁଷ ମହାତ୍ମା ଗାନ୍ଧୀଙ୍କ 'ୟଙ୍ଗ୍ ଇଣ୍ଡିଆ' ସମ୍ବାଦ ପତ୍ରର ଲେଖା ସ୍ମରଣ କରାଯାଇପାରେ । "ଜଣେ ପୁଣ୍ୟାତ୍ମା ସଂସାରରୁ ଚାଲିଗଲେ……………। ଅସହଯୋଗରେ ଯୋଗଦେଇ ଛାଡ଼ିଲେ…………ତାଙ୍କର ପ୍ରିୟ ସର୍ଜନ ସତ୍ୟବାଦୀ ବିଦ୍ୟାଳୟକୁ ବି ଆହୁତି ଦେଲେ………ତାଙ୍କର ମନରେ ଟିକିଏ ହେଲେ ଦ୍ୱିଧା ନ ଥିଲା । ସେ ଜୀବିତ ନ ଥିଲେ ମଧ୍ୟ ତାଙ୍କ ଆତ୍ମା ଓଡ଼ିଶାର କର୍ମୀକୁଳଙ୍କୁ ବାଟ କଢ଼ାଉ ! ଦେଶରେ କର୍ମୀଙ୍କ ସଂଖ୍ୟା ଅଳ୍ପ, ହୁଏତ ଚଳିବ ନ । ଗୋପବନ୍ଧୁଙ୍କ ମୃତ୍ୟୁ ଫଳରେ ସେମାନେ ଅଧିକ ଏକତାବଦ୍ଧ ହୁଅନ୍ତୁ"………। ଅନ୍ୟତ୍ର ଗୋପବନ୍ଧୁଙ୍କ ବିଷୟରେ କୁହାଯାଇଛି "ଗୋପବନ୍ଧୁ ଦାସ ଖାଣ୍ଟି ସୁନା ଥିଲେ । ପର ପାଇଁ ଓ ଦେଶ ପାଇଁ ତାଙ୍କ ପ୍ରାଣ ସବୁବେଳେ କାନ୍ଦୁଥିଲା ।" ସ୍ୱରାଜ୍ୟ ଆନ୍ଦୋଳନରେ ଗୋପବନ୍ଧୁ ଓଡ଼ିଶାକୁ କର୍ମଭୂମିରୂପେ ବାଛିନେବା ପାଇଁ ଗାନ୍ଧୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ । ୧୯୨୪ରେ ବେଲଗଡ଼-ଠାରେ ଓଡ଼ିଶା କର୍ମୀମାନଙ୍କୁ ସେ କହୁଥିଲେ, "ଓଡ଼ିଶାର ଯେତେ ଦିନ ମୋ ଆଖି ଆଗରେ ନାଚୁଛି, ସେଥିରୁ ମୋର ଦୃଢ଼ ମତ ଯେ ଓଡ଼ିଶାବାସୀଙ୍କୁ ଦାନା ଗଣ୍ଡାକ ଜୁଟାଇ ଦେବାହିଁ ଓଡ଼ିଶା କ୍ଷେତ୍ରରେ ସ୍ୱରାଜ୍ୟ ।" କଂଗ୍ରେସ କର୍ମୀ ଦଳାଦଳି ଭୁଲି ନିଜେ ନିଜେ ଓଡ଼ିଆବାସୀଙ୍କୁ ଅନ୍ନ ମୁଠାଏ ଯୋଗାଇ ଦେବାର ବ୍ୟବସ୍ଥା କରନ୍ତୁ ।

ପରିମିତ ଜୀବନରେ ଅପରିମିତ ପ୍ରତିଭାର ନିଦର୍ଶନ, ସ୍ୱାଧୀନତା ସଂଗ୍ରାମରେ ଅସହଯୋଗ ଅନ୍ୟମାନଙ୍କ ନିକଟରେ ସ୍ୱପ୍ନାତୀତ ଥିଲାବେଳେ ଗୋପବନ୍ଧୁ ସେଥିପାଇଁ ଓଡ଼ିଶାରେ କ୍ଷେତ୍ର ପ୍ରସ୍ତୁତ କରିବାରେ ଲାଗି ପଡ଼ିଥିଲେ । ସ୍ୱାଧୀନତା ସଂଗ୍ରାମ ପାଇଁ ଗାନ୍ଧୀଜୀ ସୈନିକ ଖୋଜୁଥିଲାବେଳେ ସେ ମଣିଷ ଗଢ଼ା କାରଖାନାର ଭିତ୍ତିସ୍ଥାପନ କରିସାରିଥିଲେ । ତାହାର ଫଳସ୍ୱରୂପ ରେଭେନ୍ସା କଲେଜର, ସ୍କୁଲର କିଶୋର ଓ ଯୁବକମାନଙ୍କୁ ନେଇ ଏହା ଗଢ଼ି ଉଠିଲା ।

## ୟଙ୍ଗ୍ ଉତ୍କଳ ଆସୋସିଏସନ

ଗୋପବନ୍ଧୁଙ୍କର ଯାଦୁକାରୀ ପ୍ରଭାବ ଛୁଞ୍ଚିଭଳି

ଛାତ୍ରାବାସରେ ପ୍ରବେଶ କଲା । ସମଗ୍ର ସହର ଯେତେବେଳେ ସୁପ୍ତ ଛାତ୍ରାବାସରୁ ସ୍ୱାଧୀନତା ସଂଗ୍ରାମର ଦୀକ୍ଷା ନେବା ପାଇଁ ଗୋଟିଏ ଗୋଟିଏ ସଂଗ୍ରାମୀ ଛୁଟିଲେ କଲ୍ଲା ପଡ଼ିଆ ଓ କାଠଯୋଡ଼ୀର ବାଲୁକା ପ୍ରାନ୍ତରକୁ । ଗୁଲ୍ଲି ଗୁପ୍ତ ମନ୍ତ୍ରଣା, ବୈଠକ, ନୂତନ ଉଦ୍ଦୀପନାର ପ୍ରୋତ୍ସାହକ ଗୋପବନ୍ଧୁ ଶୁଣାଉଥିଲେ ଫରାସିରଷ୍ଟ୍ର ଚମ୍ପର ଓ ଇଟାଲି ସ୍ୱାଧୀନତାର କାହାଣୀ । ଏଦେଶପାଇଁ କିଶୋର ଯୁବକଙ୍କୁ ଯେମିତି ଗୋଟିଏ ଗୋଟିଏ ବାଜିରାଉତ କରି ଗଢ଼ି ତୋଳିବା ପାଇଁ ସେ ନେଇଥିଲେ ଅଗ୍ନିସ୍ପୃଷ୍ଟ ଶପଥ ।

## ଶପଥ ପାଠ



Digitized by PPRACHIN, SOA

ସ୍ୱରାଜ୍ୟ ସାଧନର ଶ୍ରେଷ୍ଠ ପୂଜାରୀ ଗୋପବନ୍ଧୁଙ୍କ କଣ୍ଠରୁ ଝଂକୃତ ହେଲା, "ଚାଲ, ହରହର ! ଆଜି ଭାର୍ଗବୀ କୂଳରେ ଠିଆ ହୋଇ ଆମେ ଶପଥ ନେବା। "ଶପଥ କର ମଳକଣ୍ଠ, ହରହର, ଅନନ୍ତ ! ଜନ୍ମ ହେବାବେଳେ ଓଡ଼ିଆକୁ ଯାହା ଦେଖିଥାଇ ତା'ଠାରୁ ଉନ୍ନତ ଦେଖି ମରିବା । ଆମେ ପାଠପଢ଼ି ଚାକିରୀ ଗ୍ରହଣ କରିବା ନାହିଁ, ଦେଶ ପାଇଁ କଷ୍ଟ କରିବା ।" ଭାର୍ଗବୀର ନିବାଦ ଜଳ ଭିଜା ଭିଜା, ଅଞ୍ଜଳି ନିକ୍ଷେପ କରି ଶପଥ କରାଗଲା । ପୁଣି ୮୦ ଜଣ ଯୁବକଙ୍କୁ ଧରି ମହାନଦୀର କୂଳରେ ନୌକା ଚାଲିଲା ଧବଳେଶ୍ୱର ଅଭିମୁଖେ ଜାତିର ସ୍ୱାର୍ଥମେଧ ଯଜ୍ଞରେ ନିଜକୁ ଆହୁତି ଦେବା ନିମନ୍ତେ ଶପଥ ଉଦ୍ଦେଶ୍ୟରେ । ପ୍ରାଣିକ ଗୋପବନ୍ଧୁଙ୍କ ଉପସ୍ଥିତିରେ ଗୋଟିଏ ଗୋଟିଏ ଜନ୍ମେଷଶୀଳ ପ୍ରତିଭା ଧବଳେଶ୍ୱରଙ୍କୁ ଗୃହୀ ଶପଥ କରାଗଲେ । ପ୍ରତ୍ୟେକ ହୃଦୟଙ୍ଗମ ଉଦ୍‌ବୋଧିତ ହେଲେ ।

"ସ୍ୱରାଜ୍ୟ ସାଧନେ ରହୁ ମୋର ମନ
ଭାରତେ ସ୍ୱରାଜ୍ୟ ଜଗତ କଲ୍ୟାଣ"

ପରେ ପରେ ଶିକ୍ଷାଗତ ପ୍ରମାଣ ଚଳ ଦୋହରାଗଲା ନିମ୍ନୋକ୍ତ ପଂକ୍ତି ସମୂହର ଆଦର୍ଶରେ ।

"ଅନ୍ୟର ଅଶ୍ରୁ ପାଇଁ ଉଚ୍ଛେ ଶିର ଦେବ
ଚଉପଣ ଅଭିଳାଷ ନର ଅବିବେକୀ ।
ସ୍ୱାଧୀନତା ପ୍ରିୟେ, ଧରି ଅପର ଚରଣ
ଭାଗ୍ୟ ଅରଜନୁଁ ଶ୍ରେୟ ମହିଷ ମରଣ ।"

ସ୍ୱରାଜ୍ୟ—ସାଧନ ନିମନ୍ତେ ଏହାଠାରୁ ବଳି ବଳିଦାନ ଆଉ କ'ଣ ହୋଇପାରେ ? ଯାହା ଦେଖି ବଙ୍ଗଳାର ଶ୍ରେଷ୍ଠ ସନ୍ତ୍ରାସବାଦୀ ସ୍ୱାଧୀନତା ସଂଗ୍ରାମୀ ଗୋପବନ୍ଧୁଙ୍କ ଉଦ୍ଦେଶ୍ୟରେ କହିଥିଲେ—

"ଏ ବିଦେଶୀ ରାଜଶକ୍ତି ଧ୍ୱଂସ କରିବାରେ
ସେ ପରା ହନୁମାନ; ମୁଁ ସାମାନ୍ୟ ଗୁଣ୍ଡୁଚି ମୂଷା ମାତ୍ର"

## ସତ୍ୟବାଦୀ ବିଦ୍ୟାଳୟର ଆଭିମୁଖ୍ୟ ଓ ଭୂମିକା

ପଲ୍ଲୀପ୍ରାଣ ଗୋପବନ୍ଧୁଙ୍କ ଭାଷାରେ ଆମ୍ଭମାନଙ୍କ ଜାତୀୟ ଶକ୍ତିର ମଜ୍ଜା ପଲ୍ଲୀରେ...... । ଯାହାର ପ୍ରତିଫଳନରୂପେ ଏକ ବୈପ୍ଳବିକ ଶକ୍ତାଧାର ଓ ଆଦର୍ଶ ସାଧନାର କେନ୍ଦ୍ରଭୂମିରୂପେ ୧୯୦୯ କୁମାର ପୂର୍ଣ୍ଣିମା ଦିନ ସତ୍ୟବାଦୀର ବକୁଳ ବୃକ୍ଷଅନା କୁଞ୍ଜରେ ଗଢ଼ି ଉଠିଲା ସତ୍ୟବାଦୀ "ବନ ବିଦ୍ୟାଳୟ" । ଏହାର ଅଭିମୁଖ୍ୟ ସମ୍ବନ୍ଧରେ ପଣ୍ଡିତ ଗୋଦାବରୀଶଙ୍କ ଏକ ପ୍ରଶ୍ନର ଉତ୍ତରରେ ଦୂରଦ୍ରଷ୍ଟା ଗୋପବନ୍ଧୁ କହିଥିଲେ "ଓଡ଼ିଶାର ସ୍ୱାଧୀନତା ପାଇଁ ମୁଁ ଏ ବିଦ୍ୟାଳୟ ଗଢ଼ିବାକୁ ଯାଉଛି ।" ଏହା ଉପରି ଅନ୍ୟ ଏକ ପ୍ରଶ୍ନର ଉତ୍ତରରେ କହିଥିଲେ, "ସ୍ୱାଧୀନତା ପାଇଁ ଆମେ ଅସ୍ତ୍ର ଅପେକ୍ଷା ଧରି ଯୁଦ୍ଧ କରିବୁ ନାହିଁ । କିନ୍ତୁ ଏପରି ସମାଜ ଗଢ଼ିବୁ ପାରିବା ଯାହାକୁ ଶାସନ କରିବା ପଶୁବଳ ଉପରେ ନିର୍ଭର କରୁଥିବା ଇଂରେଜ ପକ୍ଷେ ଅସମ୍ଭବ ହୋଇ ପଡ଼ିବ ।" ସ୍ୱରାଜ୍ୟ ଆନ୍ଦୋଳନ ପାଇଁ ସତ୍ୟବାଦୀ ବନ ବିଦ୍ୟାଳୟ ଯେ ଓଡ଼ିଶାରେ ଅନୁକୂଳ ବାତାବରଣ ସୃଷ୍ଟି କରିଥିଲା ଏହାର ପ୍ରତ୍ୟକ୍ଷ ପ୍ରମାଣ ୧୯୨୧ ମସିହାରେ ଗାନ୍ଧୀଙ୍କ ଏହି ବିଦ୍ୟାଳୟ ପରିଦର୍ଶନ ପରେ ମନ୍ତବ୍ୟ ଏହିକି ସୁଗୃହୀତ ଏ । ନିସ୍ୱାପର କର୍ମୀ, ଶିକ୍ଷକ ଓ ଛାତ୍ର ଯଦି ଦେଶରେ ମିଳୁକିବେ ତେବେ ବର୍ଷକ ମଧ୍ୟରେ ସ୍ୱରାଜ୍ୟ ଲାଭ କଷ୍ଟ ବିସ୍ମୟକର କଥା ନୁହେଁ ବୋଲି ମୋର ବିଶ୍ୱାସ ।"

ଗୋପବନ୍ଧୁ ଥିଲେ କଂଗ୍ରେସର ଜଣେ ବିଶିଷ୍ଟ ଉତ୍କଳୀୟ ପ୍ରବେଶ ଭାଗୀରଥୀ ସହିତ ଉତ୍କଳ ଯମୁନାର ମିଳନ ପୀଠ । ୧୯-୪ ୧୯୧୯ ମସିହା ଉତ୍କଳ ସମ୍ମିଳନୀରେ କହିଥିଲେ, "ଭାରତର ଆକାଂକ୍ଷା ସହିତ ଉତ୍କଳ ଆକାଂକ୍ଷାର ସାମଞ୍ଜସ୍ୟ ରହିବା ଉଚିତ...... । ଉତ୍କଳ ସମ୍ମିଳନୀ କାର୍ଯ୍ୟରେ ଭାରତୀୟ ଆନ୍ଦୋଳନରୁ ପୃଥକ ହେଲେ ସୁଦ୍ଧା ମହାଭାରତୀୟ ଜାତୀୟତା ସହିତ ଏ ଯାଏ ସଂଯୋଗ ଅମର ମୂଳମନ୍ତ୍ର । ସିଂହଭୂମି ଜିଲ୍ଲା ଓ ଚକ୍ରଧରପୁରର ବଳିଷ୍ଠ ନେତୃତ୍ୱ ଅଭାବରୁ ସ୍ୱାଧୀନତା ସଂଗ୍ରାମୀମାନେ ହତୋତ୍ସାହ ହେବା ଜାଣି ଶିକ୍ଷକତା କରିବା ଆଳରେ ରହି,



Digitized by PPRACHIN, SOA

ତାଙ୍କୁ ଓଗୋଦାବଗଣଙ୍କୁ ସେ ସତ୍ୟବାଦୀରୁ ସିଂହଭୂମି ପଠାଇଲେ ।

୧୯୨୦ରେ ସେ ପୁରୀ ଜିଲ୍ଲାରେ କଂଗ୍ରେସ କମିଟିର ସଭାପତି ହେଲେ । ସେହି ବର୍ଷ ସେ ପୁନା କଂଗ୍ରେସ ଅଧିବେଶନରୁ ଫେରି ଚକ୍ରଧରପୁର ଉତ୍କଳ ସମ୍ମିଳନୀକୁ ଜାତୀୟ କଂଗ୍ରେସ ସହିତ ମିଶାଇଦେବା ପ୍ରସ୍ତାବ ଗୃହୀତ କରାଇନେଲେ । ଭାରତର ସ୍ୱରାଜ୍ୟ ଆନ୍ଦୋଳନ ପାଇଁ ଏହା କ'ଣ ତପ, ତ୍ୟାଗ ଓ ଆଦର୍ଶର କଥା, କମ୍ ମହାନୁଭବତା ଓ ଉଦାରତାର ପ୍ରମାଣ ?

ଉତ୍କଳର ପ୍ରତିପଲ୍ଲୀରେ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ପ୍ରଚାର ନିମନ୍ତେ ୪-୧୦-୧୯୧୯ରେ ସତ୍ୟବାଦୀରୁ 'ସମାଜ' ପ୍ରକାଶ ପାଇଲା । ତା ବହୁ ପୂର୍ବରୁ "ସତ୍ୟବାଦୀ ସାହିତ୍ୟ" ପତ୍ରିକା ପ୍ରକାଶ ପାଇ ସାରିଥିଲା । 'ସମାଜ' ଓ 'ସତ୍ୟବାଦୀ ସାହିତ୍ୟ' ପତ୍ରିକାରେ ଗୋପବନ୍ଧୁ ସମ୍ପାଦକୀୟ ଓ ଅଗ୍ରଲେଖାରେ ଅସହଯୋଗ ଆନ୍ଦୋଳନର ବାର୍ତ୍ତା ପ୍ରଚାର କଲେ । ତା ମଧ୍ୟରେ କନକ ରାଜାଙ୍କ ଅତ୍ୟାଚାର ଓ "ସତ ହେଲେ ସାଂଘାତିକ" ପ୍ରକାଶ ପାଇଥିଲା ।

## କାରାବରଣ

୧୯୨୧—୨୨ ମସିହାରେ ଓଡ଼ିଶାର ପ୍ରତିପଲ୍ଲୀରେ ବୁଲି ସଭା—ସମିତି ମାଧ୍ୟମରେ ଅସହଯୋଗ ଆନ୍ଦୋଳନର ବାର୍ତ୍ତା ପ୍ରଚାର କଲେ । ତାଙ୍କର ଭାବଗର୍ଭକ ଅଗ୍ନିମୟ ଭାଷଣ ଫଳରେ ଦେଶର ତରୁଣ ଶିକ୍ଷିତଠାରୁ ଆରମ୍ଭ କରି ଅକାଳବୃଦ୍ଧଜନତା ପର୍ଯ୍ୟନ୍ତ ଅସହଯୋଗ ଆନ୍ଦୋଳନରେ "ଅନଳ ଦେଖି-ଲା ପତଙ୍ଗ" ନ୍ୟାୟରେ ଲମ୍ଫ ଦେଲେ । ତାଙ୍କର ଭାଷଣ ଥିଲା ନେହେରୁଙ୍କ ଭାଷାରେ, "ତୁମେ କ'ଣ ଏହି ଗୌରବୋଜ୍ଜ୍ୱଳ ସଂଘର୍ଷରେ କେବଳ ଦେଖଣାହାରି ହୋଇ ରହିବ? ଆଖି ଆଗରେ ସମର—ପ୍ରାଙ୍ଗଣ, ଭାରତର ଜାତୀୟ ପତାକା ତୁମକୁ ଗୁହାରି କରୁଛି···।" ଫଳରେ ଅନେକ ଜାତ ଛାଡ଼ିଲେ ଓକିଲାତି, ଛାତ୍ରମାନେ ଛାଡ଼ିଲେ ସ୍କୁଲ, କଲେଜ. ଘରେ ଘରେ ଚୁଲିଲା ଅରଟ ଚରଖା । ଇଂରେଜ ସରକାରଙ୍କ ଦୃଷ୍ଟି ପଡ଼ିଲା ଗୋପବନ୍ଧୁଙ୍କ ଉପରେ । ଅନେକ ଆଗରୁ ସେମାନେ ସୁଯୋଗରେ ଥିଲେ । ସେତେବେଳକୁ "ସତ ହେଲେ ସାଂଘାତିକ" ଓ କନିକା ରାଜାଙ୍କ ଅତ୍ୟାଚାର ଲେଖି ପ୍ରକାଶ କରିଥିବା ଯୋଗୁ ତାଙ୍କ ବିରୁଦ୍ଧରେ ୫୦୦ ଟଙ୍କା ଅଇ. ପି. ସି. ଓ କ୍ରିମିନାଲ ଆମେଣ୍ଡମେଣ୍ଟ ଆଇନର ୧୭ ଦଫା ଅନୁସାରେ ୧୪୪ ଧାରା ଜାରି କରି ତାଙ୍କୁ ଗିରଫ କରାଗଲା । ଖୋର୍ଦ୍ଧା ହାକିମର ସେ ବୃତ୍ତାନ୍ତ ଓସ୍ତଗଛ ତାହାର ସାକ୍ଷୀ ଦେବ । ତାହାହିଁ ସ୍ୱାଧୀନତା ଆନ୍ଦୋଳନରେ ଓଡ଼ିଶାର ପ୍ରଥମ ବିଚାର । ପରେ ଦୁଇଟି ଦଣ୍ଡରେ ୨ ବର୍ଷ ୬ ମାସ କାରାଦଣ୍ଡ ନିମନ୍ତେ ୨୪.୧-୧୯୨୩ରେ କଟକରୁ ଟ୍ରେନ ଯୋଗେ ତାଙ୍କୁ ହଜାରିବାଗ ଜେଲକୁ ନିଆଗଲା । ସେତେବେଳେ ନିମ୍ନଲିଖିତ ୪ ପଦଟି ତାଙ୍କର ଅନ୍ତରାତ୍ମାର ବଳିଷ୍ଠ ଅଭିବ୍ୟକ୍ତି ରୂପେ ପ୍ରତିଫଳିତ ।

କାତରତା ବିନା କାପୁରୁଷ ପଣ
ବୀର ମରେ ଥରେ ମରେ ଭୀରୁ ଗଣ ।
ଛଳିଥିବା ନାହିଁ ବୀରର ଜୀବନେ
ନ ମରେ ସେ ଡରେ ପରାଣ ଆତଙ୍କେ ।

## ସ୍ୱାଧୀନତା ସଂଗ୍ରାମରେ କବି ଗୋପବନ୍ଧୁ

ବିଶ୍ୱର ଅଧିକାଂଶ ଶ୍ରେଷ୍ଠ ସାହିତ୍ୟ କୃତି ଜେଲଖାନାରୁହିଁ ଜନ୍ମ । ଗୋପବନ୍ଧୁ ହେଉଛନ୍ତି ସେ ସତ୍ୟର ଉଦ୍ଗାତା । ତାହା ଥିଲା ତାଙ୍କ ଜୀବନର ସାଧନା ଓ ପଣ । ସେ ମହାଭାରତୀୟ ଜାତୀୟ ତରଙ୍ଗରେ ଉତ୍କଳ ପ୍ରବାହକୁ ନେଇ ମିଶାଇ ଦେଇଥିଲେ । ସ୍ୱଦେଶ ପ୍ରେମର ପରିପ୍ରସାରକ ଓ ପରିପ୍ରସାରହିଁ 'ସ୍ୱରାଜ୍ୟ' 'ସାଧନା'ର ଶ୍ରେଷ୍ଠ ଦ୍ୱାହୃତ ହେବ ଏହା ପୂଣ୍ୟ ଶ୍ଳୋକ ଗୋପବନ୍ଧୁ ବେଶ୍ ଅନୁଭବ କରି ପାରିଥିଲେ । ତାଙ୍କର କାରାବାସ



Digitized by PPRACHIN, SOA

ଫଳରେ ହୁଏତ ସ୍ୱାଧୀନତା ସଂଗ୍ରାମୀମାନଙ୍କ ମନବଳ ଭାଙ୍ଗି ଯାଇପାରେ ବା ନେତୃତ୍ୱର ଅଭାବ ସମସ୍ତେ ଉପଲବ୍‌ଧି କରି ପାରନ୍ତି ତେଣୁ, ତାଙ୍କର ସଂଗ୍ରାମୀ ସହକର୍ମୀମାନଙ୍କୁ ସେ ଯେଉଁ ଉଦ୍‌ବୋଧନ ଦେଇ-ଥିଲେ ସେଥିରୁ ତାଙ୍କର ସତ୍ୟାଗ୍ରହ ପ୍ରତିଥିବା ଅଟଳ ବିଶ୍ୱାସର ସୂଚନା ମିଳେ ।

"ଦେଶବାସୀ ବନ୍ଧୁ ଅମ୍ଭୀପ୍ସୁ ସୋଦର
କାରାଦଣ୍ଡେ ମୋର ହେଉଲେକ କାତର"

ରାଜନୈତିକ ଆନ୍ଦୋଳନକୁ ଗୋଟିଏ 'ଧର୍ମନାଦ' ରୂପେ ଚିହ୍ନଣ କରି ଭଗବାନଙ୍କ ଅଟୁଟ ବଳ ଆନନ୍ଦରେ ଗାଇ ଯାଇଥିଲେ—

ଉତ୍କଳ ନିବାସୀ ଏ ଦଶା ଦେଖିଣ
ନିରାଶରେ ବଳ କରନ୍ତେ ହେ କ୍ଷୀଣ"
ଭରସି ଭାବନା ବାଣ୍ଡାରି ବିଜ୍ଞନେ
ମିଳିବ ସ୍ୱରାଜ୍ୟ ହୋଇବ କେମନ୍ତେ ?
ନ ଅଟେକେ କର୍ମ ନେତାର ଅଭାବ
କର୍ମ ନବ ଚଳେ ଧର୍ମର ପ୍ରଭାବ ।

ବିଶେଷେ ଉତ୍କଳେ ନାହିଁ ପ୍ରୟୋଜନ
ଉତ୍କଳର ନେତା ନିଜେ ନାରାୟଣ ॥
ଆଧ୍ୟାତ୍ମିକ ଭାବେ ଲାଗିଛି ଲଢ଼ାଇ
ଭାଙ୍ଗିବାକୁ ପଶୁ ବଳର ବଢ଼ାଇ ॥

ସମସ୍ତ ଦୁଃଖ ନିର୍ଯ୍ୟାତନା ସତ୍ତ୍ୱେ ସଂଗ୍ରାମୀ ଗୋପବନ୍ଧୁ-ଙ୍କର ସତ୍ୟପ୍ରୀତି ଓ ସ୍ୱାଧୀନ-ପିପାସା ମନୋବଳର ଅବସାନ ଘଟି ନାହିଁ । ଯାହା ଫଳରେ ସେ ଘୋଷଣା କରିଛନ୍ତି "ସତ୍ୟ ସ୍ୱାଧୀନତା ଲାଗି ଯାର କାରବାସ ତା' ଲାଗି ଏ ପୁଣ୍ୟ ବଳେ କରେ ମୁଁ ବିଶ୍ୱାସ" ।

ସ୍ୱାଧୀନତା ଆନ୍ଦୋଳନକୁ ଅଧିକ ଶକ୍ତିଶାଳୀ କରି ଦେଶ ମାତୃକାକୁ ପ୍ରଥମେ ପରାଧୀନତାର ଶୃଙ୍ଖ-ଳାରୁ ମୁକ୍ତ କରିବା ପାଇଁ ଦେଶବାସୀଙ୍କ ଉଦ୍ଦେଶ୍ୟରେ ଆହ୍ୱାନ ଜଣାଇବା ସଙ୍ଗେ ସଙ୍ଗେ ଉତ୍କଳର ଜନଗଣର ନେ ଅଧିନାୟକ ହାତ ଯୋଡ଼ି ବିନତି କରିଛନ୍ତି ।

"ଯଦି ମୋ ପ୍ରତି ତମର ଶ୍ରଦ୍ଧା ପ୍ରକୃତ ଥାଏ ତାହାହେଲେ ସ୍ୱରାଜ୍ୟ-ସାଧନରେ ପୂର୍ଣ୍ଣ ପ୍ରାଣରେ ସହଯୋଗ କର ।"

ମୋ ଭାଇ ଭଉଣୀ ହେ ଉତ୍କଳ ବାସୀ,
ସ୍ୱରାଜ୍ୟ ସାଧନେ ନ ହୁଅ ଉଦାସୀ ॥
ସ୍ୱରାଜ୍ୟ ମାନବ ଜନ୍ମ ଅଧିକାର
ଏହା ବିନେ ଦେଶ ହୁଏ ଛାର ଖାର ॥
କରଯୋଡ଼ି କରେ ମିନତି ଏତିକି
ଅସହଯୋଗରେ ରଖିବ ମତିକି ॥
ଢାଳି ଦିଅ ପ୍ରାଣ ସ୍ୱରାଜ୍ୟ ସାଧନେ
ଆଶିଷିବ ପରେ ମୋତେ ନିର୍ବାଣେ ॥

× × ×

ସମଗ୍ର ଭାରତ ବାସୀଙ୍କ ଉଦ୍ଦେଶ୍ୟରେ ସେ ଗାଇଛନ୍ତି ।

ଉଠ ଆସୁଅଛି ସ୍ୱରାଜ୍ୟ ତପନ
ଭାରତେ ଜାଗ୍ରତ ନରନାରୀଗଣ ॥
ଘୁମାଇଁ ନ ରହ ଏ ସମୟେ ଆଉ
ଉଠ ଉଠ ବେଗେ ବେଳ ଥାଉଁ ଥାଉଁ ॥

ଏହା କ'ଣ ଗୋପବନ୍ଧୁଙ୍କର ଭାରତର ସ୍ୱାଧୀନତା ଆନ୍ଦୋଳନର ଯଥେଷ୍ଟ ଭୂମିକା ନୁହେଁ ? ତାଙ୍କର ସାହିତ୍ୟ ମଧ୍ୟରେ ମିଳେ ଦେଶ ପ୍ରେମର ସ୍ୱାକ୍ଷର । ପ୍ରତ୍ୟକ୍ଷ ଆନ୍ଦୋଳନପାଇଁ ଭାଗ ନେବା ସଙ୍ଗେ ସଙ୍ଗେ ତତ୍‌-କାଳୀନ ଉଚ୍ଚ ଶିକ୍ଷିତ ତରୁଣ ସମାଜକୁ ଅନୁପ୍ରାଣିତ, ଉଦ୍‌ବୁଦ୍ଧ କରିବାକୁ ଯାଇ ସେ ଯଥାର୍ଥରେ ଲେଖିଲେ ।

ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶ ବାସୀ ଚାଲି ଯାନ୍ତୁ ପିଠିରେ ॥
ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ॥
ସ୍ୱାଧୀନତା-ପଥ ଉଜ୍ଜ୍ୱଳ ହେଲେ ନର
ମୋ ଜୀବନ ଦାନେ ହେଉ ଅଗ୍ରସର ॥

ଦେଶର ସ୍ୱରାଜ୍ୟ ସାଧନ ନିମନ୍ତେ ଉପସ୍ଥାପନ ବାକ୍ୟରେ ଏପରି ଜୀବନ ଉତ୍ସର୍ଗର ନିଦର୍ଶନ ନିଶ୍ଚିତ-ଭାବେ ବିଶ୍ୱ ଇତିହାସର ଦୁର୍ଲଭ । "ବସୁଧୈବ



Digitized by PPRACHIN, SOA

କୁଟୁମ୍ବକମ୍," ଯାହାଙ୍କର ଆଦର୍ଶ, ସ୍ୱରାଜ୍ୟ ହାସଲ ଯାହାଙ୍କର ଲକ୍ଷ୍ୟ, ସେହି ଭାବନାରେ ଓଡ଼ିଶାକୁ ସେ କର୍ମ କ୍ଷେତ୍ରରୂପେ ବାଛି ନେଇ ଥିଲେ । ମନୁଷ୍ୟର ଶକ୍ତି ସୀମିତ ବୋଲି, କ୍ଷୁଦ୍ର ବୁଦ୍ଧି, ସଙ୍କୀର୍ଣ୍ଣତା ସର୍ବସ୍ୱ କେତୁ ସମାଲୋଚକମାନେ ତାଙ୍କୁ ପ୍ରାଦେଶିକ ମନୋଭାବାପନ୍ନ ବୋଲି ଅନାବଶ୍ୟକ ଆକ୍ଷେପ କଲେ ମଧ୍ୟ ସେ ଥିଲେ ଯୁଗ ମାନବ, ତାଙ୍କସ୍ୱ-ଜୀବନର ମହାକାବ୍ୟ ।

ଶ୍ରୀ ବିନୋଦ ବିହାରୀ ମହାନ୍ତି
ସୁନାବେଡ଼ା—୨

---

ଏବେ ନୀଳାଚଳେ ବିଜେ ଜଗନ୍ନାଥ
ତେବେ କାହିଁ କାନ୍ଦେ ଉତ୍କଳ ଅନାଥ
ନାହିଁ ପୂର୍ବବଳ, ନାହିଁ ପୂର୍ବଧର୍ମ
ନାହିଁ ପୂର୍ବସତ୍ୟ, ନାହିଁ ପୂର୍ବ କର୍ମ
ଉତ୍କଳ ବାସୀର ଦେଖି ଓ ଦୁର୍ଗତି
ଦାରୁଭୂତ ହେଲେ ନୀଳାଚଳ ପତି

---

ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ
ଉଦ୍ଧରିବା ଆଶେ କଲେ ତନୁ କ୍ଷୟ
ମାନବ ଜୀବନ ହୁଅଇ ସଫଳ
ଏ ମହାଦୀକ୍ଷା କି ବୁଝିବ ଉତ୍କଳ ।

---


*With best compliments of :—*

**SANDEEP CLOTH CENTRE**

SHOP No. 12 Phone No. 361

**H. A. L. Township**

SUNABEDA-2

**KORAPUT Dist.**

SPECIALIST IN :

**Suiting, Shirting, Sarees, Retail Stockist of Binny Clothes Readymade Garments, Modella Knitting Wool** ETC.




Digitized by PPRACHIN, SOA

# ସୃଷ୍ଟି ଓ ସୁଷ୍ଟ୍

## ପ୍ରବନ୍ଧ



## କବିତା



## ଗଳ୍ପ



Digitized by PPRACHIN, SOA



# ଆସନ୍ତୁ ଓଡ଼ିଆରେ କହିବା ଓ ଲେଖିବା

"ଓଡ଼ିଆରେ ଭାବ, ଓଡ଼ିଆରେ କହ, ଓଡ଼ିଆରେ ଲେଖ." ଏ ଛୋଟି କଥା କହିବା ଦ୍ୱାରା କେତେ-କଙ୍କ ମନେ ହେଉଛି ଏହା ସଂକୀର୍ଣ୍ଣତା । ମୁଁ ସଂକୀର୍ଣ୍ଣତା କଥା କହୁନାହିଁ । ପ୍ରତ୍ୟେକ ପ୍ରାଦେଶିକଭାଷା ସମ୍ପର୍କରେ ମୋର ଅଭିମତ ଠିକ୍ ଏପରି । ଲୋକେ ତଥାକଥିତ ଅନ୍ତର୍ରାଷ୍ଟ୍ରୀୟ ବା ରାଷ୍ଟ୍ରୀୟ ଭାବଧାରା ଦ୍ୱାରା ଏତେ ମାତ୍ରାରେ ପ୍ରଭାବିତ ଯେ ନିଜ ପ୍ରଦେଶ, ନିଜ ଜିଲ୍ଲା, ନିଜ ଗ୍ରାମ, ନିଜ ପରିବାର ବା ନିଜ ସମ୍ପର୍କରେ କିଛି କହିବାକୁ ପିବାପ୍ରବଙ୍କୁ ସଂକୀର୍ଣ୍ଣତାର ଆକ୍ଷେପ ଦ୍ୱାରା ଶରବ୍ୟ କରୁଛନ୍ତି । ନିଜ ମା ଓ ମାତୃଭାଷାକୁ ଭଲ ପାଇବାକୁ ଯଦି ସଂକୀର୍ଣ୍ଣତା ବୋଲି କୁହାଯାଏ ତାହେଲେ ସେ ପ୍ରକାର ସଂକୀର୍ଣ୍ଣ ହେବାରେ ଦୁଃଖ ନାହିଁ ।

ସେମାନେ ଇଂରାଜୀ କଥା କହୁଛନ୍ତି । ଏହାର ଅନ୍ତର୍ରାଷ୍ଟ୍ରୀୟତା, ବୈଜ୍ଞାନିକତା ଏବଂ ଶ୍ରେଷ୍ଠତା ଉପରେ ଦୁଇଡ଼ଜନ ପ୍ରମାଣ ଦେଇ, ତାହା କିପରି ଭାରତୀୟ ଭାଷାଗୁଡ଼ିକଠାରୁ ମଧ୍ୟ ଲୋକପ୍ରିୟ ତାହା ବୁଝାଉଛନ୍ତି । ମାତ୍ର ଏ କଥା ମୁଁ ଏପର୍ଯ୍ୟନ୍ତ ବୁଝି-ପାରୁ ନାହିଁ ଯେ ଜଣେ ଅନ୍ୟ ରୂପବତୀ, ଅଳଙ୍କାର ବିମଣ୍ଡିତା ରମଣୀ ଗୁଣ ଓ ସ୍ୱାସ୍ଥ୍ୟରେ ମୋ ମାଠାରୁ ଯେତେ ପ୍ରଭାବଶାଳୀ ହେଲେ ମଧ୍ୟ ମୁଁ ଜଣେ ବିମାତାକୁ କିପରି ମା ବୋଲି ସମ୍ବୋଧନ କରିବି ? ମୋ ମା ବୁଢ଼ୀ ତଥାପି ସେ ମୋ ପାଇଁ ସ୍ନେହମୟୀ । ସେହିପରି ମୋ ମାତୃଭାଷା । ଏହା ଯେତେ ଅପୂର୍ଣ୍ଣ, ସଂକୀର୍ଣ୍ଣ ଓ ସାରହୀନ ହେଲେ ମଧ୍ୟ ଇଂରାଜୀ ଦ୍ୱାରା ଏହାକୁ ପରିବର୍ତ୍ତିତ କରାଯାଇ ନ ପାରେ । ଏ ଦୃଷ୍ଟିରୁ ଓଡ଼ିଆ ଓଡ଼ିଆହିଁ ରହିବ ଓ ଇଂରାଜୀ ଇଂରାଜୀହିଁ ରହିବ ।

ଇଂରାଜୀଭାଷା ଓ ସାହିତ୍ୟର ଜଣେ ଛାତ୍ର ହିସାବରେ ମୁଁ ଏହା କେବେ ମଧ୍ୟ ମାନିପାରିବି ନାହିଁ ଯେ—ଯାହା ଅଛି ସବୁ ଅଛି ଇଂରାଜୀରେ । ଓଡ଼ିଆ ବା ଆମ ଭାରତୀୟ ଭାଷାଗୁଡ଼ିକରେ ଏପରି କିଛି ଜିନିଷ ରହିଛି ଯାହା ଇଂରାଜୀ ଚେଷ୍ଟା କଲେ ମଧ୍ୟ ଆଣି ପାରିବ ନାହିଁ । ଆମେ ଯାହା କହୁଁ ତାହା ଲେଖୁଁ, ସେଇଟା ହେଲା ଆମ ବୈଶିଷ୍ଟ୍ୟ । ଯେଉଁ କ୍ଷେତ୍ରରେ ଇଂରାଜୀରେ କୁହାଯାଏ ଏକ ପ୍ରକାର ତ ଲେଖାଯାଏ ଅନ୍ୟ ପ୍ରକାର । ଭାଷାଗତ ଦୃଷ୍ଟିରୁ ଓଡ଼ିଆ ଇଂରାଜୀଠାରୁ ବହୁ ଊର୍ଦ୍ଧ୍ୱରେ । ଇଂରାଜୀର ଉଚ୍ଚାରଣ ଯେ କେତେ ଅସଙ୍ଗତ ବନ୍ଧୁର ଓ ବିଶୃଙ୍ଖଳିତ ତାହା ଇଂରାଜୀ ସାହିତ୍ୟର ପ୍ରଧାନ ନାଟ୍ୟକାର ବର୍ଣ୍ଣାର୍ଡ଼ ଶ'ଙ୍କ ଗୋଟିଏ ଉଦାହରଣରୁ ଜଣାପଡ଼େ । ସେ ଇଂରାଜୀ ଭାଷାକୁ ବ୍ୟଙ୍ଗ କରିବାକୁ ଯାଇ ଏକ ନୂତନ ଶବ୍ଦର ସୃଷ୍ଟି କଲେ "ଘୋଟି (Ghoti), ଏହାର ଉଚ୍ଚାରଣ "ଫିସ୍" (Fish) ରୂପେ ହେବ । ଯେହେତୁ (Cough)ର 'gh' ଏଫ (F) ପରି ଉଚ୍ଚାରିତ ହୁଏ, ଏବଂ ଉଇମେନ (Women)ର 'O' କ୍ଷୁଦ୍ର ଆଇ (i)

ପରି ଉଚ୍ଚାରିତ ହୁଏ ଏବଂ ନେସନ୍ (Nation)ର 'ti' ଇସ୍ (sh) ପରି ଉଚ୍ଚାରିତ ହୁଏ । ଏ ସମସ୍ତ ଦୃଷ୍ଟିରୁ 'ଘୋଟି' 'ଫିସ୍' ପରି ଉଚ୍ଚାରିତ ହେବ । ଯେଉଁ କ୍ଷେତ୍ରରେ ଭାରତୀୟ ଭାଷାଗୁଡ଼ିକ ବ୍ରାହ୍ମୀ ଓ ଦେବନାଗରୀଲିପିରୁ ଆସିଥିବାରୁ ଉଚ୍ଚାରଣରେ କୌଣସି ପ୍ରକାର ଅସଙ୍ଗତି ଦେଖାଯାଏ ନାହିଁ ।

ଅନେକ ତ୍ରୁଟି ଥିବାସତ୍ତ୍ୱ ଇଂରାଜୀ ଆଜି ସଭ୍ୟ ଜଗତରଭାଷା, ବିଜ୍ଞାନରଭାଷା ଓ ବିଶ୍ୱସାହିତ୍ୟର ଭାଷା-ଯେଉଁ କ୍ଷେତ୍ରରେ ଓଡ଼ିଆ ଓଡ଼ିଶାର ଭାଷା-ଭାବରେ ସୀମିତ । ଇଂରାଜୀ ଜାତିର କୁଆଡେ ବଢ଼ିବାର ଲକ୍ଷଣ । ଏହା ଯେ ଓଡ଼ିଶାରେ ହେଉଛି ବା ଭାରତରେ ହେଉଛି ତା ନୁହେଁ, ଦିନେ ଇଂଲଣ୍ଡରେ ଇଂରାଜୀ ମଧ୍ୟ ସେହି ଅବସ୍ଥାରେ ଅବହେଳିତ ହୋଇ ପଡ଼ିଥିଲା । ଇଂଲଣ୍ଡରେ ଇଂରାଜୀ କିପରି ରାଜଭାଷା ହେଲା ତାର ଆଲୋଚନା କରିବା ଏଠି ଆବଶ୍ୟକ ମନେ ହେଉଛି । କାରଣ ସେ ଜାତିଠାରୁ ମଧ୍ୟ କିଛି ଶିକ୍ଷା କରିବା ଉଚିତ । ଆମ ପ୍ରାଚୀନତମ ଶାସ୍ତ୍ର ବେଦରେ ତ କୁହାଯାଇଛି-ଉତ୍ତମ ବିଚାର ବିଶ୍ୱର ପ୍ରତ୍ୟେକ ଦିଗରୁ ଆମ ପାଖକୁ ଆସି ପହଞ୍ଚୁ ।

ଆଜି ସମଗ୍ର ଓଡ଼ିଶାରେ ଓଡ଼ିଆ ବା ସମଗ୍ର ଭାରତବର୍ଷରେ ହିନ୍ଦୀର ସ୍ଥିତି ଯାହା, ପଞ୍ଚଦଶ, ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀରେ ଇଂଲଣ୍ଡରେ ଇଂରାଜୀର ସ୍ଥିତି ମଧ୍ୟ ଠିକ୍ ସେଇଆ ଥିଲା । ଏପରିକି ସପ୍ତଦଶ ଶତାବ୍ଦୀର ଶେଷ ଦଶକ ପର୍ଯ୍ୟନ୍ତ ଇଂଲଣ୍ଡର ପ୍ରତ୍ୟେକ କ୍ଷେତ୍ରରେ ଫରାସୀ ଓ ଲାଟିନ୍‌ଭାଷାର ପ୍ରାଧାନ୍ୟ ଓ ସମ୍ମାନ ଅକ୍ଷୁର୍ଣ୍ଣ ଥିଲା । ଫ୍ରାନସ୍ ପର୍ଯ୍ୟଟନ କରିବା, ଫରାସୀ ଭାଷାରେ କଥାବାର୍ତ୍ତା ହେବା ଏବଂ ଲାଟିନ୍ ଶ୍ଳୋକ ଉଦ୍ଧାରକରି କଥାବାର୍ତ୍ତା କହିବା ବିଜ୍ଞତା ବୋଲି ଧରାଯାଉଥିଲା ।

ସେ ପ୍ରକାର ପରିସ୍ଥିତିରେ ଇଂରାଜୀରେ କହିବା, ଲେଖିବା ବା ପଢ଼ିବା ଘୃଣ୍ୟ କାର୍ଯ୍ୟ ବୋଲି ଲୋକେ ଧରି ନେଉଥିଲେ । ପ୍ରତ୍ୟେକ ସରକାରୀ ଓ ଶିକ୍ଷାନୁଷ୍ଠାନଗୁଡ଼ିକରେ ଇଂରାଜୀକୁ ଜଙ୍ଗଲି, ଗାଉଁଲି ଓ ଅସଭ୍ୟଭାଷା ବୋଲି ଧରି ନିଆଯାଉଥିଲା । ଇଂରାଜୀର "ୟୁ" ଓ "ୱା"ର ପ୍ରୟୋଗ କରି ନ ପାରି ଏହାର ଅକ୍ଷର ବିନ୍ୟାସକୁ ଅଶୁଦ୍ଧ ବୋଲି ବିଚାର କରାଯାଉଥିଲା । ଡାକ୍ତରମାନେ ପ୍ରଚାର କରି ଦେଇଥିଲେ ଯେ, ଇଂରାଜୀରେ ଡାକ୍ତରୀ ଶିକ୍ଷା ଦେବା ଅର୍ଥ ରୋଗୀକୁ ବିପଦରେ ପକାଇବା । ୧୫୪୧ରେ ସାର୍ ଥମାସ ଇଲିୟଟ, "କେସେଲ୍ ଅଫ୍ ହେଲ୍ଥ" ପୁସ୍ତକର ଭୂମିକାରେ ନିମ୍ନମତ ଏହା ସ୍ୱୀକାର କରିଥିଲେ ଯେ—"ଡାକ୍ତରବର୍ଗ ଅସନ୍ତୋଷ ହେବେ କାହିଁକି ନା ମୁଁ ଶରୀର ବିଜ୍ଞାନକୁ ଇଂରାଜୀ ଭାଷାରେ ଲେଖିଛି ।"

ଇଂଲଣ୍ଡର କେଥଲିକ୍ ସମ୍ପ୍ରଦାୟ ଇଂରାଜୀ ଭାଷାର ହୀନମନ୍ୟତା ପାଇଁ ଅନେକ ପରିମାଣରେ ବୁଦ୍ଧିଜୀବୀଙ୍କୁ ଉତ୍ସାହିତ କରୁଥିଲେ । ଇଂରାଜୀରେ ପବିତ୍ର ଶାସ୍ତ୍ର ବାଇବଲର ଅନୁବାଦକୁ ମଧ୍ୟ ଘୋର ବିରୋଧ କରାଯାଉଥିଲା । ଥମାସ୍ ହାର୍ଡ଼ିଙ୍ଗ୍ ଏଥିପାଇଁ କାରଣ ଦର୍ଶାଉଥିଲେ ଯେ, ଗାଉଁଲି ଓ ଜଙ୍ଗଲି ଭାଷାରେ ପରମେଶ୍ୱରଙ୍କ ବାକ୍ୟ ପଢ଼ିବା ଅଗ୍ରାହ୍ୟ ଅଟେ । ଇଂରାଜୀରେ ବାଇବଲ ଅନୁବାଦ ହୋଇ ପାରିବ ନାହିଁ । ଯଦି ହେବ ଲୋକେ ତାହା ବୁଝି ପାରିବେ ନାହିଁ ଏବଂ ଅର୍ଥକୁ ଅନର୍ଥ କରିଦେବେ । ଏହା ଦ୍ୱାରା ତାଙ୍କର ଅନେକ ଅମଙ୍ଗଳ ହେବ । ଏତଦ୍‌ବ୍ୟତୀତ ହାର୍ଡ଼ିଙ୍ଗ୍ ଅନ୍ୟମାନଙ୍କ ସମ୍ମୁଖରେ ଏହା ସ୍ୱୀକାର କଲେ ଯେ ବାଇବଲରେ ଏପରି କିଛି ରହସ୍ୟ ରହିଛି ଯାହା ସର୍ବଜନୀନଭାବରେ ଉଦ୍‌ଘାଟନ କରିବା ଅନୁଚିତ ଏବଂ ଏହାର ଇଂରାଜୀ ଅନୁବାଦ ଏହାପ୍ରତି ଘୃଣା ଓ ଗ୍ଲାନି ଉତ୍ପନ୍ନ କରିବ । ଏଥିପାଇଁ ସେ ପ୍ରୋଟେଷ୍ଟାଣ୍ଟମାନଙ୍କୁ ଆକ୍ଷେପ କରୁଥିଲେ । ୧୫୩୬ରେ ବାଇବଲର ଇଂରାଜୀ ପରିବର୍ତ୍ତିତ ସଂସ୍କରଣ ପ୍ରକାଶ କରିଥିବାରୁ ଟିନ୍‌ଡେଲ୍‌ଙ୍କୁ ଅଗ୍ନିରେ ଜୀବନ୍ତ ଦଗ୍ଧ କରି ଦିଆଯାଇଥିଲା ।



Digitized by PPRACHIN, SOA

କେବଳ ଯେ ଶିକ୍ଷାପ୍ରାଣିଷା ଓ ଧର୍ମକ୍ଷେତ୍ରରେ ଇଂରାଜୀକୁ ଅପମାନିତ କରାଯାଉଥିଲା ତା ନୁହେଁ । ଭୂଗୋଳ, ଜ୍ୟୋତିର୍ବିଜ୍ଞାନ ଏବଂ ଜ୍ଞାନବିଜ୍ଞାନ କ୍ଷେତ୍ରରେ ମଧ୍ୟ ଇଂରାଜୀ ଅବହେଳିତ ଅବସ୍ଥାରେ ପଡ଼ିଥିଲା । ୧୫୭୦ରେ "ଏଲିମେଣ୍ଟସ୍ ଅଫ୍ ଜ୍ୟାମେଟ୍ରୀ"ର ସଫଳ ଅନୁବାଦକ ଜୋନ୍ ଡି ତାଙ୍କ ଭୂମିକାରେ କ୍ଷମା ପ୍ରାର୍ଥନା ପୂର୍ବକ ଲେଖିଥିଲେ ଯେ ଏହି ଅନୁବାଦ ବିଶ୍ୱବିଦ୍ୟାଳୟ ତଥା ସେମାନଙ୍କ ସ୍ନାତକଙ୍କ ସମ୍ମାନ ଓ ଆଗ୍ରହକୁ ହ୍ରାସ କରିବ ନାହିଁ । କାରଣ ଠିକ୍ ଏହା ପୂର୍ବରୁ ୧୫୬୨ରେ ଭୂଗୋଳ ଶାସ୍ତ୍ରର ଇଂରାଜୀ ସଂସ୍କରଣ ଉପରେ ସାର୍ ଉଇଲିୟମ ସିସିଲ୍ ସନ୍ଦେହ ପ୍ରକଟ କରିଥିଲେ ।

ତନ୍ମଧ୍ୟରୁ ଲଣ୍ଡନର ବିଦ୍ୱାନ୍ ଟର୍ନର ଇଂରାଜୀ ଭାଷାର ପକ୍ଷ ସମର୍ଥନ କରି ସାର୍ ଉଇଲିୟମ ସିସିଲ୍‌ଙ୍କ ଆପତ୍ତିର ଉତ୍ତର ଦେବାକୁ ଯାଇ କହିଲେ-ଯେଉଁଠି ସିସିଲ ଭୂଗୋଳକୁ ଇଂରାଜୀ ଅନୁବାଦରେ ସନ୍ଦେହ ପ୍ରକଟ କରିଛନ୍ତି ମୁଁ ତାଙ୍କୁ ଅତି ଧୃଷ୍ଟତାରେ ଏହି ବିଶ୍ୱାସ ଦେବାକୁ ଚାହେଁ ଯେ ପ୍ଲିନୀଙ୍କ ଇତିହାସକୁ ମୁଁ ସ୍ୱଭାଷାରେ ଅନୁବାଦ କରି ଦେଖାଇଦେବି । ଯଦିଓ ଲାଟିନ ସମୃଦ୍ଧ ଭାଷା ଅଟେ ଏବଂ ଇଂରାଜୀ ଗାଉଁଲି ଓ ଜଙ୍ଗଲି ଭାଷା ତଥାପି ମୁଁ ଏହି ଅନୁବାଦରେ ଲାଟିନ୍‌ର ସେତିକି ଶବ୍ଦ ଗ୍ରହଣ କରିବି ନାହିଁ ଯେତିକି ସେ ଗ୍ରୀକ୍‌ଠାରୁ ଗ୍ରହଣ କରିଛନ୍ତି ।

ମନଟେନ୍‌ଙ୍କ ଅନୁବାଦ କରିବାକୁ ଯାଇ ଜୋନ୍ ଫ୍ଲୋରିଓ (୧୬୦୩) ମୁଖବନ୍ଧରେ ସଶକ୍ତ ଶବ୍ଦ ଦ୍ୱାରା ଏହା ଲେଖିଥିଲେ ଯେ ପୂର୍ବକାଳରେ ମଧ୍ୟ ସମସ୍ତ ଜ୍ଞାନ ଅନୁବାଦ ମାଧ୍ୟମରେ ପ୍ରସାରିତ ହେଉଥିଲା । ଗ୍ରୀକଗଣ ମିଶରର ଗ୍ରନ୍ଥଗୁଡ଼ିକ ଓ ମିଶ୍ରମାନେ କାଲଡିୟନ୍‌ସ୍‌ଙ୍କ ଅନୁବାଦ କରୁଥିଲେ । କ୍ୱିଣ୍ଟ ମୂଲକେଷ୍ଟର କହନ୍ତି—ଲାଟିନ୍‌କୁ ଇଂରାଜୀଠାରୁ ଅଧିକ ମହତ୍ତ୍ୱ ଏଥିପାଇଁ ଦିଆଯାଉଛି କାରଣ ଏହାର ପ୍ରୟୋଗ ଏବଂ ଅଧ୍ୟୟନ ଅଧିକ ପରିମାଣରେ ହୋଇଛି । ମାତ୍ର କୌଣସି ଭାଷା ଅନ୍ୟ ଭାଷାଠାରୁ ମୂଳତଃ ଉତ୍ତମ ହୋଇ ନ ଥାଏ । ପରିଶ୍ରମ ଦ୍ୱାରା ଏହାର ବିକାଶ ହୋଇଥାଏ, ପୃଷ୍ଠପୋଷକତା ଦ୍ୱାରା ଏହା ଅଲଙ୍କୃତ ହୋଇଥାଏ ଏବଂ ସ୍ୱାଧ୍ୟାୟ ବଳରେ ସମୃଦ୍ଧ କରାଯାଇଥାଏ । ସେ ଲାଟିନ୍‌ର ମହତ୍ତ୍ୱ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ଏହା ମଧ୍ୟ ବିଶ୍ୱାସ ରଖୁଥିଲେ ଯେ ଏ ପ୍ରକାର ଗଢ଼ି କରିବା ଦ୍ୱାରା ଦିନେ ଇଂରାଜୀ ଲାଟିନ୍‌କୁ ଅତିକ୍ରମ କରିଯିବ । ତେବେ ଏହା ସେ ଉଚିତ ମନେ କରୁ ନ ଥିଲେ ଯେ ଇଂରାଜୀ ନିଜେ ଜ୍ଞାନ ପ୍ରାପ୍ତି ପାଇଁ ଅନ୍ୟଭାଷାର ଦାସତ୍ୱ ସ୍ୱୀକାର କରୁ । ସେ ନିଶ୍ଚୟ ରୋମ ଓ ଇଟାଲୀକୁ ଭଲ ପାଉଥିଲେ ମାତ୍ର ତାହାଠାରୁ ସେ ଅଧିକ ଭଲ ପାଉଥିଲେ ଇଂଲଣ୍ଡ ଓ ଲଣ୍ଡନ୍‌କୁ । ସେ ଲାଟିନ୍‌କୁ ସମ୍ମାନ କରୁଥିଲେ ମାତ୍ର ଇଂରାଜୀକୁ ପୂଜା କରୁଥିଲେ ।

ଇଂଲଣ୍ଡରେ ଅଳ୍ପ ଏକ ଚରମପନ୍ଥୀ ମଧ୍ୟ ବାହାରିଲେ । ଯେଉଁମାନେ ଲାଟିନ୍‌କୁ ପଶୁଙ୍କ ଭାଷା କହି ବହିଷ୍କାର କରିବାକୁ ଲାଗିଲେ । ସେହି ଗୋଷ୍ଠୀର ମୁଖ୍ୟ ପ୍ରବକ୍ତା ଥିଲେ ଡ଼ା ଜର୍ଜ ସନେଲ ଯେ ଚେଷ୍ଟରର ମୁଖ୍ୟ ପାଦ୍ରୀ ଥିଲେ । ଲାଟିନ୍ ପଢ଼ିବାକୁ ସମୟର ଦୁରୁପଯୋଗ ବୋଲି ସେ କହୁଥିଲେ । ଜେନ୍ ଓ୍ୱେବ୍‌ଷ୍ଟରଙ୍କ ମଧ୍ୟ ତଦନୁରୂପ ମତ ଥିଲା ।

ଅନେକ ସଂଘର୍ଷ ଓ ସଂଗ୍ରାମ ପରେ ନଭେମ୍ବର ୨୨, ୧୬୫୦ରେ ଇଂରାଜୀ ଭାଷାକୁ ବ୍ରିଟିଶ ସଂସଦ ସେଠାର ରାଜଭାଷା ଭାବରେ ଘୋଷଣା କଲେ । ନ୍ୟାୟାଳୟରେ ଲାଟିନ୍ ବା ଫ୍ରେଞ୍ଚ ଭାଷା ପରିବର୍ତ୍ତେ ଇଂରାଜୀ ଭାଷାର ପ୍ରଚଳନ ହେବାକୁ ଲାଗିଲା । ସ୍ୱୀକୃତ ପାଇବା ପରେ ମଧ୍ୟ ଲୋକେ ଏତେ ସହଜରେ ବିଦେଶୀ ଭାଷାରୁ ମୋହ ଛାଡ଼ିଲେ ନାହିଁ । ଅଧ୍ୟାପକ, ଡାକ୍ତର, ଅଫିସର ଏବଂ ଓକିଲମାନେ ଲାଟିନ୍ ଓ ଫ୍ରେଞ୍ଚର ପ୍ରୟୋଗ କରିବାକୁ ଗୌରବ ବୋଲି ମନେ କରୁଥିଲେ । ୧୬୫୯ରେ ସର୍ ଜୋନ୍



Digitized by PPRACHIN, SOA

ଚରକକନ୍ ହେତୁ ବାଲ୍ଲନକ ପୁସ୍ତକର ଏକ ବ୍ୟଙ୍ଗ ପୂର୍ଣ୍ଣ ସୂଚୀ ପ୍ରକାଶିତ କରିଥିଲେ । ଯାର ଶୀର୍ଷକଥିଲା "ପଢ଼ା ଲେଖା କରି ନ ଥିବା ନୂତନ ଓକିଲମାନଙ୍କ ପାଇଁ ଇଂରାଜୀରେ ଲିଖିତ ନାୟୁସକାନୁନ ।" ଏହା ଇଂରାଜୀ ଭାଷା ପାଇଁ କଣ୍ ଅପମାନଜନକ କଥା ନ ଥିଲା ?

ଏହାର ପ୍ରତିକ୍ରିୟା ସବୁଦିନ ବ୍ୟାପିଗଲା । ଡ୍ରାଇଡନ୍ ତାଙ୍କ "ଡ୍ରାମାଟିକ୍ ପୋଏଟ୍ରୀ ଅଫ୍ ଦ ଲାଷ୍ଟ ଏଜ୍"ରେ ତାଙ୍କ ପ୍ରତିକ୍ରିୟା ବ୍ୟକ୍ତ କଲେ— ସେମାନେ ଯଥେଷ୍ଟ ପରିମାଣରେ ଫରାସୀ ଶବ୍ଦ ମିଶାଇ ଆମ ଭାଷାକୁ ଅଶୁଦ୍ଧ କରି ଦେଉଛନ୍ତି ! ଇଂରାଜୀକୁ ଶୁଦ୍ଧ ଓ ଶୈଳୀପୂର୍ଣ୍ଣ କରିବାକୁ ଯାଇ ଏହାକୁ ଫରାସୀ ଭାଷାରେ ପରିବର୍ତ୍ତିତ କରି ଦେଉଛନ୍ତି । ସେ ଦୁଃଖ ପ୍ରକାଶ କରି କହିଲେ—ସେମାନେ ଏପରି ଅନେକ ବାବୁଙ୍କୁ ଦେଖନ୍ତି ଯେଉଁମାନେ ପ୍ରତାରଣା କରି ଦେଖାଇ ଦିଅନ୍ତି—ସତେ ଯେପରି ସେମାନେ ଇଂରାଜୀ ଜାଣି ନାହାନ୍ତି । ୧୭୧୧ରେ ଏଡିସନ୍ "ସ୍ପେକ୍ଟେଟର"ରେ ଅନୁରୂପ ପ୍ରତିକ୍ରିୟା ବ୍ୟକ୍ତ କରି ଫରାସୀ ଭାଷାର ଅଖଣ୍ଡ ଆଧିପତ୍ୟକୁ ଅସ୍ୱୀକାର କଲେ ! କେମ୍ପବେଲ ପ୍ରମାଦ ଗଣିଲେ—ବିଦେଶୀ ଶବ୍ଦ ଦ୍ୱାରା ଆମ ଭାଷା ଏକ ବୃହତ୍ତର ବିପଦର ସମ୍ମୁଖୀନ ହେବାକୁ ଯାଉଛି ।

ପ୍ରକୃତରେ ଓଡ଼ିଆ ବା ଭାରତୀୟ ଭାଷାଗୁଡ଼ିକ କଣ ବିଦେଶୀ ଭାଷାଗୁଡ଼ିକ ଦ୍ୱାରା କବଳିତ ନୁହନ୍ତି କି ? ଷୋଡ଼ଶ ଶତାବ୍ଦୀରେ ଇଂରାଜୀ ଭାଷାର ଯେପରି ସ୍ଥିତିଥିଲା ଓ ଓଡ଼ିଆ ଭାଷାର ସେ ସ୍ଥିତି ଆଜି ନାହିଁକି ? ଓଡ଼ିଶାରେ ଜନ୍ମ ହୋଇ ଓଡ଼ିଆ ମାତୃଭାଷା ଥିବା ସତ୍ତ୍ୱେ ଆଜିର ଯୁବକମାନେ "ଅଲ୍ଟରନେଟିଭ ଇଂଲିଶ" ନେଉଛନ୍ତି । ଭବିଷ୍ୟତରେ ପୁଅ ଝିଅ ବଡ ଚାକିରୀ କରିବେ ବୋଲି ପିତାମାତା ତାଙ୍କୁ କନଭେଣ୍ଟ ଓ ପବ୍ଲିକ ସ୍କୁଲ ଆଦିକୁ ପଠାଉଛନ୍ତି । ଓଡ଼ିଆର ମୌଳିକ ଜୀବନ ପ୍ରଣାଳୀଠାରୁ ଅତ୍ୟନ୍ତ ପୃଥକ ହୋଇ ସାରିଲାଣି । ଆମ ପ୍ରଦେଶର ନାମ ଇଂରାଜୀକରଣ ହୋଇ ସାରିଲାଣି ।

ଏହାସତ୍ତ୍ୱେ ମୁଁ ଭାବୁଛି, ଓଡ଼ିଆରେ ସବୁ ହୋଇ ପାରିବ । ମାତ୍ର ନ ହେଲେ ହେବ କପରି ? ଯଦି ଆମେ ଘରର ବାହାରେ ସବୁଠାରେ ପରା ଇଂରାଜୀ ବା ଖଣ୍ଡଖଣ୍ଡ ଇଂରାଜୀ କହିବାଟାକୁ ଏକ ଶୈଳୀ ବୋଲି ଧରିନେଉଁ ତାହେଲେ ଶତାବ୍ଦୀଟିଏ ଗଲାପରେ ମଧ୍ୟ ଏହା ମଧ୍ୟରେ କୌଣସି ପ୍ରକାର ପରିବର୍ତ୍ତନ ଆସି ପାରିବ ନାହିଁ । ଅଜ ସମୟ ଆସିଛି ଆମ ଭାଷାକୁ ଆମେ ଆମ ହାତରେ ନିର୍ମାଣ କରିବା । କେତେକ ଭାବୁଛନ୍ତି ସମସ୍ୟା ଭାଷାର ନୁହେଁ ଅନୁବାଦର । ଯଦି ସମସ୍ୟା ଅନୁବାଦର ନୁହେଁ ତେବେ ବିଜ୍ଞାନ ଜଗତରେ ବହୁଳ ଭାବରେ ପ୍ରଚଳିତ ଅନେକ ଶବ୍ଦକୁ ଆମେ ଆମ ଭାଷାରେ କ'ଣ କ'ଣ କହିବା ? ଉଦାହରଣ ସ୍ୱରୂପ Pelecypoda, Saccharum Ustum, Opisthoglossa, Railwey train ଏବଂ $H_2SO_4$ ଆଦି ଶବ୍ଦକୁ ଆମେ ଓଡ଼ିଆରେ କପରି ଭାଷାନ୍ତର କରିବା ?

ଯେଉଁ ପ୍ରାଣୀର ପାଦ ଟାଙ୍ଗିଆ ପରି ହୋଇଥାଏ ତାକୁ ପ୍ରାଣୀବିଜ୍ଞାନରେ Pelecypoda କୁହାଯାଏ । ପର୍ଶୁ ଅର୍ଥ ଟାଙ୍ଗିଆ । ଏଣୁ ଏହି ଶବ୍ଦଟିକୁ 'ପର୍ଶୁପାଦ' କହିଲେ କେତେ ସୁନ୍ଦର ନ ହୁଅନ୍ତା ? ସେହିପରି Saccharum Ustum ଅର୍ଥ "ପୋଡ଼ା-ଚିନି" । ଏହା ଏକ ଲାଟିନ ଶବ୍ଦ । ସକାରୁମ ଉସ୍ତୁମ ଶବ୍ଦଦ୍ୱୟ ସଂସ୍କୃତଭାଷାରୁ ଯୁରୋପୀୟ (ଇଣ୍ଡୋ-ୟୁରୋପୀୟ) ଭାଷାମାନଙ୍କର ଲାଟିନ ଭାଷାକୁ ଯାଇଥିବା ପରି ମନେ ହୁଏ । ସଂସ୍କୃତରେ ଚିନିକୁ ଶର୍କରା ଏବଂ ଉସ୍ତମ୍ ଅର୍ଥ ଜଳି ଯାଇଥିବା ଦ୍ରବ୍ୟ ଅର୍ଥରେ ବ୍ୟବହୃତ ହେଉଥିବାରୁ ଶବ୍ଦଟିକୁ ଆମ ଭାଷାରେ "ଶର୍କରା-ଉସ୍ତମ୍" କହିଲେ ଏହା ଏକ ପର୍ଯ୍ୟାୟବାଚୀ ଶବ୍ଦ ହୋଇ ପାରିବ । Opisthoglossa ଶବ୍ଦଟି ବେଙ୍ଗ ପ୍ରାଣୀ ଅର୍ଥରେ ବ୍ୟବହାର



Digitized by PPRACHIN, SOA

କହାଯାଏ ଯାର ଜିହ୍ୱା ଆଗକୁ ଲାଗିଥାଏ ଏବଂ ପଛକୁ ଥିଆ ହୋଇଥାଏ । ସଂସ୍କୃତରେ Opistho ଶବ୍ଦଟି ପୃଷ୍ଠ ଦେଶର ସଂପର୍କବୋଧକ । ଏଥିର ଅନୁବାଦ କରିବାରେ କୌଣସି ଅସୁବିଧା ନାହିଁ । ଯେପରି Railway train । ଏହାକୁ ଅତିସାଧୁତ୍ୟକ ଭାଷାରେ ବାଷ୍ପୀୟ ଶକଟ ବୋଲି କୁହାଯାଏ । ମାତ୍ର ନିତ୍ୟ ବ୍ୟବହାର କରିବା ପାଇଁ ଏ ଶବ୍ଦଟି ଖୁବ୍ ଦୀର୍ଘ । ଫରାସୀ ଜନସାଧାରଣ ଏ କେତୋଟିକୁ "Chemin de fer" କହିବା ଦ୍ୱାରା ଏହା ତାଙ୍କ-ପାଇଁ ଏକ ଦୀର୍ଘ ଶବ୍ଦ ହୋଇ ଆଉ ରହୁ ନାହିଁ । ଏହାକୁ ଆମ ଭାଷାରେ ଆହୁରି ସରଳ କରି କହିଲେ ଧୂଆଁଗାଡ଼ି, ଲୁହାଗାଡ଼ି ବା କଳ ପଥ କୁହାଯାଇ ପାରେ । ଜର୍ମାନୀରେ ଏ ଶବ୍ଦଟି ପାଇଁ ସେମାନେ ""Eisen-bahn" ବା "ଆଇଜନ୍-ବାହ୍ନ" ଶବ୍ଦଟି ପ୍ରୟୋଗ କରନ୍ତି ଯାହା ମୂଳତଃ ଏକ ସଂସ୍କୃତ ଶବ୍ଦ । ସଂସ୍କୃତରେ ଲୁହାର ଅନ୍ୟନାମ ଅୟନ୍ ଗାଡ଼ିର ଅନ୍ୟନାମ ବାହନ ବା ବାହ୍ନ ଅଛି । ଏ ଗୁଡ଼ିକ ପ୍ରକୃତରେ ସମସ୍ୟା ନୁହେଁ ସମସ୍ୟା ହେଉଛି ସଂକ୍ଷିପ୍ତ ବୈଜ୍ଞାନିକ ସୂତ୍ର । ଯେପରି $H_2 SO_4$ । H = ହାଇଡ୍ରୋଜେନ୍ = ଉଦ୍‌ଜାନ । S = ସଲଫର = ଗନ୍ଧକ । O = ଅକ୍ସିଜେନ୍ = ଅମ୍ଳଜାନ । ସଲଫର ଶବ୍ଦଟି ସଂସ୍କୃତରୁ ଲାଟିନ୍‌କୁ ଯାଇଛି । ଏହାର ମୂଳଶବ୍ଦ ହେଲା ଶୁଲ୍ବାରି । ଯାହାର ଅର୍ଥ ତମ୍ବାର ଶତ୍ରୁ । ଏଣୁ ଏହାକୁ "ଉଦ୍‌ଶୁଲ୍ବ" ବା "ଅଂଶୁଲ" କହିଲେ କଣ $H_2 SO_4$ ଠାରୁ ସଂକ୍ଷିପ୍ତ ଓ ସ୍ପଷ୍ଟ ହେବ ନାହିଁ ? ଏପ୍ରକାର ସମସ୍ତ ଶବ୍ଦ ଓ ସୂତ୍ରର ପାରିଭାଷିକ ଶବ୍ଦମାନ ବାହାର କରାଯାଇ ପାରେ ।

ଏଥିପାଇଁ ପ୍ରଫେସର୍ ରଘୁବୀରଙ୍କ ୧୯୫୫ରେ ପ୍ରକାଶିତ "ଇଂରାଜୀ-ହିନ୍ଦୀ ଅଭିଧାନ" ଦେଖିବା ଆବଶ୍ୟକ । ଏଥିରେ ୧,୬୯,୦୦୦ଟି ବୈଜ୍ଞାନିକ ଶବ୍ଦର ଭାରତୀୟ ପରିଭାଷା କରାଯାଇଛି । ଯାହା ସରକାରୀ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ଭାରତୀୟ ଭାଷାଗୁଡ଼ିକର ମାଧ୍ୟମ ସୁବିଧାରେ କରି ହେବ । ପ୍ରଫେସର୍ ରଘୁବୀର ବିଶ୍ୱର ବିଭିନ୍ନ ଭାଷାଗୁଡ଼ିକୁ ଅନୁଧ୍ୟାନ କରି ଏହା ଅନୁଭବ କରନ୍ତି ଯେ ବିଶ୍ୱରେ ଖୁବ୍ ଅଳ୍ପ ଭାଷା ରହିଛି, ଯେଉଁ ଭାଷାଗୁଡ଼ିକରେ ନୂତନ ନୂତନ ଶବ୍ଦ ସୃଷ୍ଟି କରିବାର ଶୃଙ୍ଖଳା ରକ୍ଷା କରନ୍ତି । ସେହି ପ୍ରକାର ଭାଷାଗୁଡ଼ିକ ମଧ୍ୟରେ ସଂସ୍କୃତ, ଲାଟିନ୍ ଓ ଚୀନ୍‌ଭାଷା ଅନ୍ୟତମ । ତାଙ୍କ ଶବ୍ଦକୋଷର ଭୂମିକାରେ ମୂଳ ୫୨୦ ସଂସ୍କୃତ ଧାତୁର ଉଲ୍ଲେଖ କରିଛନ୍ତି ଯାହାର ୪୦୦ ଶବ୍ଦ ଭାରତୀୟ ସମସ୍ତ ଭାଷାକୁ ସ୍ୱାଭାବିକ ଭାବରେ ଅଣାଯାଇ ପାରିବ ।

ସମଗ୍ର ଯୁରୋପରେ କୌଣସି ନୂତନ ଶବ୍ଦପାଇଁ ଯେପରି ଲାଟିନ୍‌କୁ ଗ୍ରହଣ କରାଯାଏ ସେହିପ୍ରକାର ଆମ ଦେଶରେ ସଂସ୍କୃତ ଭାଷା ରହିଛି । ଓଡ଼ିଆଭାଷା ସମ୍ପର୍କରେ ଚିନ୍ତା କରିବା ସମୟରେ ସଂସ୍କୃତକୁ ପାଖରେ ରଖିବାକୁ ହେବ । କାରଣ ଆମ ଭାଷାର ସ୍ପଷ୍ଟ ସଂକ୍ଷିପ୍ତ ଅଭିବ୍ୟକ୍ତି ପାଇଁ ଏହାହିଁ ଏକମାତ୍ର ମାଧ୍ୟମ । ସଂସ୍କୃତ ଆମ ସମସ୍ତ ଭାଷାର ଜନନୀ । ଏହା ବୃଦ୍ଧା, ମୃତ ବା ଅଚଳ ନୁହେଁ ବରଂ ନିତ୍ୟ-ନୂତନ ଓ ଚିର ପୁରାତନ ଭାଷା ଅଟେ । ଆଜିକାଲି ଲୋକେ ସଂକ୍ଷିପ୍ତ ଭାଷା ଚାହୁଁଛନ୍ତି । ଇଂରାଜୀ ତାଙ୍କପାଇଁ ସଂକ୍ଷିପ୍ତ ମନେ ହେଉଛି । ମାତ୍ର ସଂକ୍ଷିପ୍ତ-ତାରେ ସଂସ୍କୃତ ସବୁ ଭାଷାଠାରୁ ବଳିଯିବା ପରି ମନେ ହୁଏ । ଗୋଟିଏ ଧାତୁକୁ ପରୀକ୍ଷା କରାଯାଉ । ଉଦାହରଣ ସ୍ୱରୂପ "ଗମ୍" ଧାତୁ ନିଆଯାଉ । ଏହା ଅର୍ଥ "ଯିବା" । ଏ ଶବ୍ଦଟି ପାଇଁ ଇଂରାଜୀରେ ଗୋଟିଏ ମାତ୍ର ଶବ୍ଦ ରହିଛି 'ଗୋ' । ଗମ୍ ଧାତୁରୁ ନିଷ୍ପନ୍ନ ହେଉଥିବା ଅନ୍ୟାନ୍ୟ ଶବ୍ଦ ଇଂରାଜୀ ଅନୁବାଦସହ ପରୀକ୍ଷା କରାଯାଉ:—

୧. ଗତ (ମୋସନ୍)
୨. ଗନ୍ତବ୍ୟ (ଦେଟ୍ ହ୍ୱିଚ୍ ଇଜ୍ ଫିଟ୍ ଟୁ ବିଗନ୍)
୩. ଗମ୍ୟ (ଦ ଅବଜେକ୍ଟ ଅଫ୍ ଦ ଏକ୍ଟ ଅଫ୍ ଗୋଇଙ୍ଗ୍)



Digitized by PPRACHIN, SOA

୪. ଗମନୀୟ (ଦେଟ୍ ହୁଇଚ୍ ଇଜ୍ ଓ୍ୱର୍ଥ ଗୋଇଙ୍ଗ୍)
୫. ଗମକ (ଦେଟ୍ ହୁଇଚ୍ କେରିଜ୍ ଅର୍ ଲିଡ୍ସ)
୬. ଜଙ୍ଗମ (ଦେଟ୍ ହୁଇଚ୍ ଗୋଜ୍ ଫ୍ରିକ୍ୱେଣ୍ଟଲି)
୭. ଜିଗମିଷା (ଦ ଡିଜାଏର୍ ଟୁ ଗୋ)
୮. ଗମକ (ଦେଟ୍ ହୁଇଚ୍ ମେକ୍ସ ଅଦର୍ସ ଗୋ)
୯. ଗମ୍ୟମାନ (ଦେଟ୍ ହୁଇଚ୍ ଇଜ୍ ବିଇଙ୍ଗ୍ ଗନ୍)
୧୦. ଗମିଷ୍ୟନ୍ (ଦେଟ୍ ହୁଇଚ୍ ୱିଲ୍ ବି ଗୋଇଙ୍ଗ୍)
୧୧ ଗନ୍ତ୍ରିକା (ଏ ସ୍ମଲ୍ ଭାଇକଲ୍)
୧୨. ଗମଥ (ଏ ପାଥ୍)
୧୩. ଗତ୍ୱର (ଦେଟ୍ ହୁଇଚ୍ ଇଜ୍ ଓ୍ୱାଣ୍ଟ୍ ଟୁ ଗୋ)
୧୪. ଗମନତା (ଅନ୍ ଏକ୍ସପ୍ଲେନେଟୋରି ପାର୍ଟ-ଫ୍ରେଜ୍)

ଏଠି 'ଗମନ'ରୂପକୁ ଏଥିପାଇଁ ଗ୍ରହଣ କରାଗଲା କାରଣ ଇଂରାଜୀରେ "ଗୋଇଙ୍ଗ" ଶବ୍ଦଟି ଅଛି । ସେପ୍ରକାର ବର୍ତ୍ତମାନ କାଳୀନ କୃଦନ୍ତ "ଗଚ୍ଛନ୍ତ"ର ଉଲ୍ଲେଖ କରାଗଲା ନାହିଁ କାହିଁକିନା ଇଂରାଜୀ ପାଖରେ ମଧ୍ୟ "ଗୋ" କ୍ରିୟାର ବର୍ତ୍ତମାନ କାଳୀନ କୃଦନ୍ତରୂପ ଅଛି । "ଜିଗମିଷା" (ଯିବାକୁ ଇଚ୍ଛା)ର ଉଲ୍ଲେଖ ପରେ "ଜିଗମିଷୁ" (ଯିବା ପାଇଁ ଇଚ୍ଛୁକ) ଶବ୍ଦଟିର ଅଲଗା ଉଲ୍ଲେଖ ଏଥିପାଇଁ କରାଗଲା ନାହିଁ କାହିଁକିନା ଇଂରାଜୀ ଶବ୍ଦକୋଷରେ "ଅର୍ଜ୍"ର ଅନ୍ତର୍ଗତ କେବଳ "ଅର୍ଜି"ର ଉଲ୍ଲେଖ ମଧ୍ୟ କରାଯାଏ । ବର୍ତ୍ତମାନ କର୍ମ କୃଦନ୍ତ "ଗମ୍ୟମାନ"ର ସ୍ୱତନ୍ତ୍ର ଉଲ୍ଲେଖ ଅଛି କାହିଁକି ନା ଇଂରାଜୀରେ ଏହାକୁ ପର୍ଯ୍ୟାୟକ୍ରମେ "ଡେଷ୍ଟିନେସନ୍" ଶବ୍ଦଟି ନିଆଯାଏ । ପୁନଶ୍ଚ ପ୍ରତ୍ୟେକ ରୂପର ବହୁଉପସର୍ଗର ଉଲ୍ଲେଖ କରାଯାଇ ନାହିଁ, କାହିଁକି ନା ଭବିଷ୍ୟତ ବର୍ତ୍ତିକୃଦନ୍ତ ଗମିଷ୍ୟନ୍ତ ପରେ ପ୍ରଥମେ ଆମ୍ଭେ ବିଗ୍ରହ କରାଯାଇଛି । ଉପଯୁକ୍ତ ସୂଚୀରେ ଦିଆଯାଇଥିବା ପ୍ରତ୍ୟେକ ଶବ୍ଦ ୨୦ଟି ବିଭିନ୍ନ ଉପସର୍ଗର ସଂଯୋଗରେ ୨୦ ଅନ୍ୟ ଶବ୍ଦକୁ ଜନ୍ମ ଦିଅନ୍ତି । 'ଗତ'ର ଉଦାହରଣ ନିଅନ୍ତୁ— (୧) ପ୍ରଗତ, (୨) ପରାଗତ (୩) ପରିଗତ (୪) ପ୍ରତିଗତ (୫) ଅନୁଗତ (୬) ଅଧିଗତ (୭) ଉପଗତ (୮) ଅତିଗତ (୯) ଆଗତ (୧୦) ଅଗେତ (୧୧) ଅପଗତ (୧୨) ଉଦ୍‌ଗତ (୧୩) ସୁଗତ (୧୪) ସଂଗତ (୧୫) ନିଗତ (୧୬) ନିର୍ଗତ (୧୭) ବିଗତ (୧୮) ଦୁର୍ଗତ (୧୯) ଅବଗତ (୨୦) ଅଭିଗତ ।

ସଂସ୍କୃତରେ ପ୍ରାୟ ୧,୭୦୦ରୁ ୨,୦୦୦ ଧାତୁ ଅଛି । ଏଥିରୁ ଏପ୍ରକାର ପ୍ରାୟ ୪,୭୬,୦୦୦ ଶବ୍ଦର ନିର୍ମାଣ ହୋଇ ପାରିବ । ସଂସ୍କୃତରେ ଏକପର୍ଯ୍ୟାୟ ଶବ୍ଦ ଅନ୍ତର୍ଗତ ସମସ୍ତ ପଦର ମଧ୍ୟ ପ୍ରୟୋଗ ହୋଇ ପାରିବ । ଯେପରି 'ଗତ' ଶବ୍ଦରେ ଭ୍ରଂଶ, ଭ୍ରମ, ବୋଧ, ସାତତ୍ୟ, ଆଦି ଶବ୍ଦ ମିଶି ଗତିଭ୍ରଂଶ, ଗତିବୋଧ, ଗତିସାତତ୍ୟ ଯେପରି କୌଣସି ସମାସଯୁକ୍ତ ପଦର ଜନ୍ମଦିଏ । ଏହି ସମାସ କେତେକ ଯୁକ୍ତ ଶବ୍ଦକୁ କ୍ରମରେ ବଦଳାଇ ଦେଲେ ସମସ୍ତ ପଦ ଓ ଏହାର ଅର୍ଥ ପୂରେ ବଦଳି ଯାନ୍ତି । ଉଦାହରଣ ସ୍ୱରୂପ :—

ହସ୍ତସିଦ୍ଧ = ହାତ ଦ୍ୱାରା ନିର୍ମିତ
ସିଦ୍ଧହସ୍ତ = କୁଶଳ ହସ୍ତ

ଏ ପ୍ରକାର ୧,୭୦୦ ଧାତୁର ନିର୍ମିତ ୨୩,୮୦୦ ମୌଳିକ ଶବ୍ଦ ବିଭିନ୍ନ ସଂଯୋଗ ଦ୍ୱାରା ୮୪,୯୬,୨୪,୦୦୦ ଅର୍ଥାତ୍ ୮୪ କୋଟିରୁ ଅଧିକ ଶବ୍ଦ ନିର୍ମାଣ କରିପାରିବେ । ଏତଦ୍‌ବ୍ୟତୀତ ଏକ ସମସ୍ତ ପଦରୁ ଦୁଇରୁ ଅଧିକ ଶବ୍ଦ ହୋଇପାରେ –

ସାର ସାର ବିଗ୍ରହ = ସାର ତଥା ଅସାର ବିଗ୍ରହ
ସୁଖ ଦୁଃଖ ବାଚକ = ସୁଖ ତଥା ଦୁଃଖରେ ବିଚରଣ କରିବା

ଏ ଗୋଟିଏ ଗୋଟିଏ ଶବ୍ଦରେ ଭିନ୍ନ ଭିନ୍ନ ଶବ୍ଦ ରହିଛି । କେତେକ ଜନ୍ମ ପାଉନ୍ତି ଏହା ଯାହା ଏଣୁ, ପ୍ରତ୍ୟେକ ଶବ୍ଦକୁ ଭାଗ୍ୟାଂଶ ମାନିବା ଉଚିତ । ସେ କ୍ଷେତ୍ରରେ ମୁଁ ସେମାନଙ୍କୁ "କାଉଣ୍ଟରରେଭୋ-ଲ୍ୟୁସନାରି, ହାଇପରସେନ୍ସିଟିଭିଟି, ସେଲ୍ଫ-ଏଗ୍ରେଣ୍ଡାଇଜମେଣ୍ଟ" ଏପରି ଅନେକ ଇଂରାଜୀ ଶବ୍ଦ


Digitized by PPRACHIN, SOA

ମନେ ପକାଇ ଦେବା, ଯାହା ଭିନ୍ନ ଶବ୍ଦରୁ କୌଣସି ପଦ ଶ୍ରେଷ୍ଠ ନୁହେଁ ।

ଏଠି କଥା କହିବାର ତାତ୍ପର୍ଯ୍ୟ ହେଲା ଆମେ କୌଣସି ଗୁଣରେ କମ୍ ନାହୁଁ ଅଥଚ ଆମର ଆତ୍ମ ବିଶ୍ୱାସ ନାହିଁ ଯେ ଆମଭାଷା ବିଶ୍ୱର ଅନ୍ୟାନ୍ୟ ଭାଷାସହ ସମକକ୍ଷ ହୋଇ ପାରିବ । ଏ ବିଶ୍ୱାସ ନ ଆସିବା ପର୍ଯ୍ୟନ୍ତ ଆମେ ଆମଦାନି ଶବ୍ଦଗୁଡ଼ିକୁ ବ୍ୟବହାର କରିବାକୁ ହେବ । "ହୋଇପାରିବନି" କହି କୌଣସି ଜାତି ଉପରକୁ ଉଠି ପାରି ନାହିଁ । ଏଣୁ ଏ ସମ୍ପର୍କରେ ଗବେଷଣା କରିବା ଉଚିତ୍ । ଭାରତର ବିଭିନ୍ନ ଭାଷା ଅପେକ୍ଷା ଓଡ଼ିଆ ଭାଷା ଏକ ସକ୍ଷମ ଓ ସଂସ୍କୃତନିଷ୍ଠ ଭାଷା । ତାହାହିଁ ଆମ ଭାଷାର ଗୌରବ । ଏହାକୁ ବିକଶିତ କରିବା ଦାୟିତ୍ୱ ପୂର୍ଣ୍ଣତଃ ଆମ ଉପରେ ନିର୍ଭର କରେ ।

ଅଧ୍ୟାପକ ଉମେଶ ପଣ୍ଡୀ
ଇଂରାଜୀ ବିଭାଗ
ଡି· ଏ· ଭି· କଲେଜ, କୋରାପୁଟ



*With best compliments of :*

**M/S. CHILDREN & LADIES CORNER STALL**

*Sector-II Market, H. A. L. Township*

*Shop No. 10*

***SUNABEDA-2*** (ORISSA)

STOCKISTS:

STATIONERY, FANCY & COSMETIC GOODS

Head office:

**P. CHHAGANLAL & BROTHERS**

MAIN ROAD- VIZAYANAGARAM-1 (A. P.)

**FANCY GOODS & WHOLE SALE MERCHANTS.**



Digitized by PPRACHIN, SOA

# ବୌଦର ପ୍ରାଚୀନ ବୌଦ୍ଧ ବିହାର

ଓଡ଼ିଶାର ପ୍ରାଚୀନ ଗଡ଼ଜାତ 'ବୌଦ' ଭଗବାନ ବୁଦ୍ଧଙ୍କ ନାମାନୁସାରେ ନାମ କରଣ କରାଯାଇଥିବା ଜଣା ଯାଏ । ସହସ୍ରାଧିକ ବର୍ଷ ପୂର୍ବେ ବୌଦ ଏକ ବିଶାଳ ରାଜ୍ୟ ଥିଲା । କାଳକ୍ରମେ ଏହା ବୌଦ ଘୁମୁସର ଓ ଆଠମଲ୍ଲିକ ଏହିପରି ତିନି ଗୋଟି ରାଜ୍ୟରେ ବିଭକ୍ତ ହୋଇଅଛି । ପୂର୍ବେ ବୌଦ ଏକ ଅଧିବାସୀ (କନ୍ଧ) ବହୁଳ ରାଜ୍ୟଥିଲା । ସେଥିପାଇଁ ବୌଦର ରାଜାମାନେ ସମୟାନୁକ୍ରମେ ବରାଳ ଦେବୀ, ପିତାବାଲୀ ଓ ମାଁଇଖଣ୍ଡା ଇତ୍ୟାଦି କନ୍ଧମାନଙ୍କ ଦ୍ୱାରା ପୂଜିତ ଦେବା ଦେବୀଙ୍କୁ ପୂଜାକରି ଆସୁଥିଲେ । ଅଷ୍ଟମ ଶତାବ୍ଦୀରେ ବୌଦରେ ଜଣେ ବ୍ରାହ୍ମଣ ରାଜା ରାଜତ୍ୱ କରୁଥିବା ଘୁମୁସର ଇତିହାସରୁ ଜଣାପଡ଼େ । ରାଜା ଅପୁତ୍ରିକ ଥିବାରୁ ମୟୂରଭଞ୍ଜ ରାଜ୍ୟର ସୂର୍ଯ୍ୟ ବଂଶୋଦ୍ଭବ ଦୈତ୍ୟାରିଭଞ୍ଜ ନାମକ ଜଣେ ରାଜଭ୍ରାତାଙ୍କର ବନମାଳି ଭଞ୍ଜ ଓ ରଘୁନାଥ ଭଞ୍ଜ ନାମକ ଦୁଇଟି କୁମାରଙ୍କୁ ପୋଷ୍ୟପୁତ୍ରରୂପେ ଗ୍ରହଣ କରି ପ୍ରତିପାଳନ କଲେ । କାଳକ୍ରମେ ବୌଦ ରାଜ୍ୟ ଭଞ୍ଜରାଜାମାନଙ୍କ ଦ୍ୱାରା ଶାସିତ ହେଲା । ଇତିହାସରୁ ଜଣାଯାଏ ପୂର୍ବେ ବୌଦ ରାଜ୍ୟର ରାଜଧାନୀ ଅଜକାଲ୍ଲର ପୁରୁଣା କଟକଠାରେ ଅବସ୍ଥିତ ଥିଲା । କାଳକ୍ରମେ ଏହା ବୌଦକୁ ସ୍ଥାନାନ୍ତରିତ ହୋଇ ଅଛି । ଯେ କୌଣସି ରାଜଧାନୀକୁ କଟକ କୁହାଯାଏ । ସେହି ପ୍ରକାରେ ପୁରୁଣା ରାଜଧାନୀକୁ ପୁରୁଣା କଟକ କୁହାଯାଉ ଅଛି । ବର୍ତ୍ତମାନ ବୌଦ ସହର ବା ସବ୍‌ଡିଭିଜନର ସଦର ମହକୁମା ମହାନଦୀର ଦକ୍ଷିଣ କୂଳରେ ଅବସ୍ଥିତ । ଏଠାରେ ଭଞ୍ଜ ରାଜାଙ୍କର ଗୋଟିଏ ମନୋହର ରାଜପ୍ରସାଦ ବା ନଅର ଅବସ୍ଥିତ । ଏହା ୧୮୨୦ ମସିହାରେ ନିର୍ମିତ ହୋଇଅଛି । ରାଜପ୍ରସାଦର ଏକ ପାର୍ଶ୍ୱରେ ମହାନଦୀର ଶିଳାବନ୍ଧନ ତଟ ଏବଂ ଅପର ତିନି ପାର୍ଶ୍ୱରେ ମହାନଦୀରୁ ଖୋଳା ଯାଇଥିବା ନାଳ ତା ରକ୍ଷା ରାଜପ୍ରସାଦକୁ ନିରାପଦ ରଖିବା ପାଇଁ ନିର୍ମାଣ କରାଯାଇଥିଲା । ଅଦ୍ୟାବଧି ଉକ୍ତ ପରିଖା ବା ନାଳର ଚିହ୍ନ ଦେଖିବାକୁ ମିଳେ । ଅତୀତରେ ବୌଦରେ ଏକ ପ୍ରସିଦ୍ଧ ବୌଦ୍ଧ ବିହାର ବା ବୌଦ୍ଧମଠ ଥିଲା । ଅଦ୍ୟାବଧି ବୌଦ୍ଧ ରାଜପ୍ରସାଦ ସଂଲଗ୍ନ ତାହା ପାର୍ଶ୍ୱରେ ଏହି ପ୍ରାଚୀନ ବୌଦ୍ଧ ପୀଠର ଭଗ୍ନାବଶେଷ ଦେଖିବାକୁ ମିଳେ । ଏଠାରେ ବୁଦ୍ଧଦେବଙ୍କର ଗୋଟିଏ ବିଶାଳ ମୂର୍ତ୍ତି ବିଦ୍ୟମାନ । ମୂର୍ତ୍ତିଟି ଖଣ୍ଡଖଣ୍ଡ ପ୍ରସ୍ତରରେ ନିର୍ମିତ ହୋଇଥିଲେ ମଧ୍ୟ ଦୂରରୁ ଖଣ୍ଡିଏ ପ୍ରସ୍ତରରେ ନିର୍ମିତ ହୋଇଥିବା ପରି ଜଣାପଡ଼େ । ମୂର୍ତ୍ତିଟି ପ୍ରାୟ ୭ଫୁଟ ଉଚ୍ଚ ଓ ପଦ୍ମାସନ ଉପବିଷ୍ଟ । ମୂର୍ତ୍ତିଟିର ମସ୍ତକ ନିକଟରେ ଉଭୟ ପାର୍ଶ୍ୱରେ ଫୁଲମାଳ ଧାରଣ କରିଥିବା ଦୁଇଟି ଦେବ କନ୍ୟା ବା ଦେବୀ ଖୋଦିତ ହୋଇଅଛନ୍ତି । ମୂର୍ତ୍ତିର ପାଦଦେଶରେ ଏକ ଅସ୍ପଷ୍ଟ ଲେଖା ଦେଖିବାକୁ ମିଳେ । ପ୍ରାଚୀନ ବୌଦ୍ଧବିହାର ବା ବୌଦ୍ଧପୀଠର ମୂକସାକ୍ଷୀରୂପେ ଇଟା ନିର୍ମିତ ପ୍ରାଚୀନ କାନ୍ଥ ଓ ଚଉଦ ଖଣ୍ଡି ବଡ଼ ବଡ଼ ଇଟା ମୁଗୁନି ପ୍ରସ୍ତର ଅଦ୍ୟାବଧି ଉକ୍ତ ସ୍ଥାନରେ ଇତସ୍ତତଃ ହୋଇ ପଡ଼ିଥିବା ଦେଖାଯାଏ । ବୌଦ୍ଧବିହାରର ଦୁଇଟି ମୋଟା ପ୍ରସ୍ତର ସ୍ତମ୍ଭ କିଛି ଦିନ ପୂର୍ବେ ଭୂପତିତ ହୋଇଅଛି । ବୌଦ୍ଧବିହାରରେ ବ୍ୟବହାର କରା ଯାଇଥିବା ଇଟାଗୁଡ଼ିକ ଅତି ପ୍ରାଚୀନ ଏବଂ ବୃହଦାକାର । ଏହିପରି ବଡ଼ ଆକାରରେ ଇଟା କଟକ ଜିଲ୍ଲାର ବୌଦ୍ଧପୀଠ ଲଳିତଗିରି ଓ ପୁରୀ ଜିଲ୍ଲାର ବୌଦ୍ଧପୀଠ ବାଣପୁରରେ ଦେଖିବାକୁ ମିଳେ ।

ଏହି ଭଗ୍ନାବଶେଷ ବୌଦ୍ଧ ବିହାରରୁ ଭୌମ ବଂଶୀୟ ରାଣୀ ତ୍ରିଭୁବନ ଦେବୀଙ୍କର ତମ୍ବାପଟା ମିଳିଥିଲା । ଏହି ତମ୍ବାପଟା ଗୁଡ଼ିକରେ ବୌଦ୍ଧ ଅନ୍ତ-



Digitized by PPRACHIN, SOA

ର୍ଗଡ଼ ଗନ୍ଧାଟ ପାଟିର ନାମ ଉଲ୍ଲେଖ ଅଛି । ଅଧୁନା ଗନ୍ଧରଡ଼ ଗନ୍ଧାଟ ପାଟିର ଅପଭ୍ରଂଶ ମାତ୍ର ।

ସ୍ଥାନୀୟ ଲୋକେ ବିବାହ ଓ ବ୍ରତ ଇତ୍ୟାଦି ମାଙ୍ଗଳିକ ଉତ୍ସବ ସମୟରେ ବୁଦ୍ଧ ମୂର୍ତ୍ତିକୁ ପୂଜା କରିଥାନ୍ତି । ମୂର୍ତ୍ତିର କପାଳ ପ୍ରଦେଶରେ ଓ ଦୁଇ ବାହୁରେ ଚନ୍ଦନର ରାମାନନ୍ଦୀ ଚିତା ତିଳକ ସ୍ଥାନୀୟ ଲୋକଙ୍କ ଦ୍ୱାରା ଦିଆଯାଇଅଛି ।

ବୌଦ୍ଧ ବିହାରର ପ୍ରାୟ ଏକ କିଲୋମିଟର ପଶ୍ଚିମରେ ମହାନଦୀ କୂଳରେ ତିଗୋଟିଏ କାରୁକାର୍ଯ୍ୟ ଖଚିତ ପ୍ରାଚୀନ ଶିବ ମନ୍ଦିର ଅବସ୍ଥିତ । ଏହା ରାମନାଥ ମନ୍ଦିର ନାମରେ ସୁପରିଚିତ । ଏଠାରେ ଚାରିଗୋଟି ଶିବ ମନ୍ଦିର ମଧ୍ୟରୁ ତିନିଗୋଟି ମନ୍ଦିରର ଆକୃତି ନକ୍ଷତ୍ରାକୃତି ବା ଷଟ୍‌କୋଣ ବିଶିଷ୍ଟ । ଏହି ମନ୍ଦିରର ସ୍ଥାପତ୍ୟ କଳାର ଅନନ୍ୟ ବିରଳ । ଏମାନଙ୍କ କାରୁକାର୍ଯ୍ୟ ଭୁବନେଶ୍ୱରର ମୁକ୍ତେଶ୍ୱର ମନ୍ଦିରର କାରୁକାର୍ଯ୍ୟ ସହିତ ତୁଳନୀୟ । ମନ୍ଦିରଗୁଡ଼ିକର ଚତୁଃପାର୍ଶ୍ୱରେ ଚତୁର୍ଭୁଜାକାର ପ୍ରାଚୀର ପରିବେଷ୍ଟିତ । ଏହି ମନ୍ଦିର ବେଢା ମଧ୍ୟରେ ଆଉ ଦୁଇ ଗୋଟି ଶ୍ରେଷ୍ଠ ବୌଦ୍ଧ ମୂର୍ତ୍ତି ମଧ୍ୟ ଦେଖିବାକୁ ମିଳେ । ଉଭୟ ମୂର୍ତ୍ତି ପ୍ରାୟ ଦେଢ଼ଫୁଟରୁ ଦୁଇ ଫୁଟ ଉଚ୍ଚତାବିଶିଷ୍ଟ । ସେଥିମଧ୍ୟରୁ ଗୋଟିଏ ପଦ୍ମାସନା ଉପବିଷ୍ଟ ସୁନ୍ଦର ବୁଦ୍ଧ ମୂର୍ତ୍ତି । ଅନୁମିତ ହୁଏ ଏହି ଦୁଇଟି ମୂର୍ତ୍ତି ପୂର୍ବୋକ୍ତ ଭଗ୍ନାବଶେଷ ବୌଦ୍ଧ ବିହାରରୁ ଅଣାଯାଇ ଏଠାରେ ସଂରକ୍ଷିତ ହୋଇଛି ।

ବୌଦ୍ଧଠାରୁ ପ୍ରାୟ ୧୮ କିଲୋମିଟର ଦୂର ଜଗତି ବା ନାରାୟଣ ନଗରଠାରେ ଯେଉଁ ପ୍ରାଚୀନ ଯୁଗ୍ମ ମନ୍ଦିର ଦେଖିବାକୁ ମିଳେ ସେହି ମନ୍ଦିର ମଧ୍ୟରୁ ନୀଳମାଧବ ପ୍ରତିଷ୍ଠିତ ମନ୍ଦିରର ଚୂଡ଼ାରେ, ଅନ୍ତଶାଳର ନିମ୍ନ ଭାଗରେ ଗୋଟିଏ କ୍ଷୁଦ୍ର ବୌଦ୍ଧ ମୂର୍ତ୍ତି ଦେଖିବାକୁ ମିଳେ । ଏଥିରୁ ବୌଦ୍ଧରାଜ୍ୟ ସେତେବେଳେ କେତେ ଦୂର ବୌଦ୍ଧ ଧର୍ମ ଦ୍ୱାରା ପ୍ରଭାବିତ ହୋଇ ଥିଲା ତାହା ସହଜରେ ଜଣାପଡ଼େ ।

ବୌଦ୍ଧର ବଡ଼ ବୁଦ୍ଧ ମୂର୍ତ୍ତିଟି ବର୍ତ୍ତମାନ ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ଗୋଟିଏ ପକ୍କା ମଣ୍ଡପରେ ସଂରକ୍ଷିତ କରାଯାଇଅଛି ।

ପଞ୍ଚମ ଶତାବ୍ଦୀଠାରୁ ନବମ ବା ଦଶମ ଶତାବ୍ଦୀ ପର୍ଯ୍ୟନ୍ତ ବୌଦ୍ଧ ରାଜ୍ୟ ବୌଦ୍ଧ ଧର୍ମର ଗୋଟିଏ ପ୍ରଧାନ କେନ୍ଦ୍ରଥିଲା ।

ଖ୍ରୀଷ୍ଟୀୟ ଅଷ୍ଟମ ଓ ନବମ ଶତାବ୍ଦୀରେ ଓଡ଼ିଶାର ବୌଦ୍ଧ ଧର୍ମ ଅତ୍ୟନ୍ତ ଲୋକପ୍ରିୟ ଧର୍ମରୂପେ ପ୍ରତିଷ୍ଠାଲାଭ କରିଥିଲା । ଏହି ସମୟ ମଧ୍ୟରେ ଓଡ଼ିଶାର ପୁଷ୍ପଗିରି, ରତ୍ନଗିରି, ଓ ଲଳିତଗିରିରେ ବୌଦ୍ଧ କୀର୍ତ୍ତି ଓ ବୌଦ୍ଧ ସଂସ୍କୃତି ପ୍ରତିଷ୍ଠିତ ହୋଇଥିଲା ।

ଐତିହାସିକମାନଙ୍କ ମତରେ ବୁଦ୍ଧ ଦେବଙ୍କ ଜୀବିତାବସ୍ଥାରେ କଳିଙ୍ଗରେ ବୌଦ୍ଧ ଧର୍ମ ପ୍ରଚାର ଓ ପ୍ରସାର ଲାଭ କରିଥିଲା । ଏହି ସମୟ ମଧ୍ୟରେ ବୌଦ୍ଧରେ ମଧ୍ୟ ଏହି ବୌଦ୍ଧ ବିହାର ବା ବୌଦ୍ଧ ପୀଠଟି ପ୍ରତିଷ୍ଠିତ ହୋଇଥିବା ଅନୁମିତ ହୁଏ ।

ଶ୍ରୀ ମାଗୁଣି ଦାଶ
ଜିଲ୍ଲା ଲୋକ ସମ୍ପର୍କ ଅଧିକାରୀ, ଫୁଲବାଣୀ

—o—

ମିଳାଇ ପ୍ରାଣ ତଥା ପ୍ରାଣେଶ ପଦେ
ନାଚିବ ବିଶ୍ୱପ୍ରେମ ପରମାନନ୍ଦେ
ମୋ ପ୍ରାଣ ପ୍ରେମଧାରେ ଭାସିବ ଧରା
ହେବ ଏ ବିଶ୍ୱ ମୋର ପ୍ରେମ ପସରା ।

ଗୋପବନ୍ଧୁ



Digitized by PPRACHIN, SOA



# କବିତା

## ତମ ଗାଁ : ଅନ୍ଧାର

ସୂର୍ଯ୍ୟାସ୍ତର କଳାଟିପା ଯେତେବେଳେ ନଇଁ ଆସେ
ତମ ଗାଁ ଚଉଡ଼ା କପାଳେ
କାକର ଘୁମଂତ ଚଂଦ୍ରୁ ଛୁଏଁ ଯେବେ
ସ୍ୱାତୀ ଅବା ରୋହିଣୀର ହାତ
ଅନ୍ଧାରକୁ ଡ଼ର ଡ଼ର ତମେ ଅସି ମୁହଁ ଢ଼ାଙ୍କ
ଚୁପ୍ ଚୁପ୍ ଏକାନ୍ତରେ ଗୋପନେ
ସପନର ପାଲଟାଣି ଭସି ଯାଏ
ପଳ ପଳ ବର୍ଷା ଓ ବସନ୍ତ ।
ସେ ମୁହୂର୍ତ୍ତେ ମନେହୁଏ ହଜିଗଲା କେଉଁଠି କେମିତି
ଅଜାଣତେ ଜୀବନର ଯାବତ ଜ୍ୟାମିତି ।
ଅହରହ ଅଲୁଅରେ ଅବଗାହ
ସମୟର ନିରୁତ ମନ୍ତ୍ରଣା
ମାଟିରୁ ଅକାଶ ଯାଏଁ ଦୌଡ଼ ଧାଡ଼ ଜୀବଜ ଜନ୍ତୁ
ତମ ଗାଁ ବନ ଅଜ ଗାଁ ମୁଣ୍ଡ ହଜିଲ ପଠାରେ
ବିଧବା ପୋଇଷ୍ଠ ପରି କାନ୍ଦୁଅଛି ଗୁମୁରି ଗୁମୁରି ।

ସମସ୍ତଙ୍କ ଅଗୋଚରେ ଡେଇଁ ଡେଇଁ ଆକାଶୁଁ ଆକାଶ
ପକ୍ଷୀର ଡେଣାରେ ବସି । ତମ ଗାଁ ନବୁଜ ଅନ୍ଧାରେ
ଟହଲେ ନିଶାଚର ଯକ୍ଷ ବିହଙ୍ଗ ସମାଜ
ତେଜ ଝାଙ୍ଗେ ସପନର ସବୁଜ ଚଂଦ୍ରର
ଅବଶିଷ୍ଟ ତହିଁ କିଛି ଆଲୋକର ଛିଟା
ଛାଇର ପ୍ରହରୀ ବଜେନ, ନିଶାର୍ଦ୍ଧ ପବନେ
ମନେହୁଏ ଚିହ୍ନା ଚିହ୍ନା, ସମସ୍ତର ଅତି ଆପଣାର
ସୁସୁପ୍ତିର ଗହନ ନିଶାରେ ତମ ଗାଁ ଗଭୀର ଅନ୍ଧାର ।

ଶ୍ରୀ ରାମଚନ୍ଦ୍ର ଶତପଥୀ
ଆକାଶବାଣୀ, ଜୟପୁର

Digitized by PPRACHIN, SOA

# ସଂଧ୍ୟା : ମୋ ସହରରେ

ଲଂବା ଚୌଡ଼ା ଅକାଶରୁ ସବୁ ଆଲୁଅ ଲିଭିଲେ,
ବା, ବଗ ବଗୁଲିଂକ ଡେଣାର ଶୁଭ୍ରତା ଭଙ୍ଗିଲେ,
ସଂଧ୍ୟା ଆସେ ଛପି ଛପି, ଲୁଚି ଲୁଚି
ମୋ ସହରକୁ ।

ସଂଧ୍ୟା ଆସେ ଏଠି ଠେଲା ପେଲା ହୋଇ
ସିନେମା ହଲ୍ ପାଖରେ—
କାହାର ଛୁଟି ପଣତ କାନରେ,
କାହାର ଲିପଷ୍ଟିକ୍ ମସୃଣ ଓଠରେ
ବା, କାହାର ସାଂପୋଦଆ କେଶସଜ୍ଜିରେ ।

ସଂଧ୍ୟା ଅାସେ ମୋ ସହରର ନଦୀ କୂଳେ କୂଳେ
ନାଚି, କୁଦି ଡେଇଁ,
କାହା କାନରେ ଫୁସ୍ ଫୁସ୍ କହି
ରାସ୍ତାକଡ଼ରେ ପେଂଗୁ ମେଂଗୁ ଉଦ୍ଧତ ଯୌବନକୁ
ଏଣେ ତେଣେ ଫିଂଗି ଫିଂଗି ଦେଇ ।

ସେ ଯେବେ ଅସି ଘନୀଭୂତ ହୁଏ
ମେ ସହରର ରାସ୍ତାଘାଟରେ,
ସେମାନଂକ ଠେଲା ପେଲା ଜମେ
କାହାର ଗରମ ନିଶ୍ୱାସେ ।

ସଂଧ୍ୟା ଆସି ମୋ ସହର କୁବଧରେ
ଝୁଂପା ଝୁଂଦ୍ଧ ହୁଏ ।
ଭୈରବମାନେ ସେଠି ଗଢ଼ାନ୍ତି ପଣାକାଟି
ବା, ଦ୍ରୌପଦୀର ବସ୍ତ୍ରାଂଚଳ ଢଏ ଠାଣେ
କାରଣ ଭୀମାର୍ଜୁନେ ଶୋଇଛନ୍ତି ନିତଘାଡ଼ ନଦତର ।

ସଂଧ୍ୟା ଯେବେ ଅାସେ ଭଣବୁଦା ଡେଇଁ,
ସେ ଅଖିରେ କଜଳ ଲଗାଏ
ଅଉ ଗଣ୍ଡଦେଶେ ଠାଣେ ମକରକା ।
ଝରଣା ଲେଖେ ତାକୁ



Digitized by PPRACHIN, SOA

ଶୋଷେ ଶୋଷି ଫିଂଗି ଦଅଂଛ
ଠିକ୍ ସିଗାରେଟ୍‌ର ଶେଷ ପଫ୍ ଭଳି,
କିଛୁ ପଇସାରେ ମୂଲମୂଲ କରି ।

ମୁଁ ଦେଖେ, ମୁଁ ଶୁଣେ
ଧାଡିବାଂଧି ଠିଆ ହୋଇଥିବା ବଭୁକ୍ଷୁମାନଂକ ଘରି ।
ଏ ବିଭକ୍ତ ସହରର
ଶେଷ ଇଲାକାରେ,
ଅବା ମୋର ଝର୍କାର ରେଲିଂରେ ।

ଶ୍ରୀ ପ୍ରମୋଦ ପଟ୍ଟନାୟକ
ଢୋବପୁଟ


**Daily Supply in Koraput District**

## ROYAL BREAD

GOOD HEALTH
For
FAMILY & CHILDREN

Manufacturer & Supplier

**M/s ROYAL BAKERY**

**Main Road, JEYPORE, Koraput**
Branch: SUNABEDA Township



*With best compliments of*

## THE KORAPUT DISTRICT WHOLESALE CO-OP. STORES LTD.

Regd. No. K–528 dated 25-6-66

**JEYPORE**-764001
KORAPUT.

Dealers in Controlled and non-controlled Textiles
and other essential commodities.




Digitized by PPRACHIN, SOA

# ସ୍ମୃତିର ସ୍ୱର

ଆତ୍ମାର ଦଗଦ୍ଗଗା ସ୍ୱର,
ମୁଁ ଖୋଜୁଛି ମୋହର ମୁଣ୍ଡକୁ ଦଅଁଙ୍କ
ପାଦୁକା ଛୁଇଁ, ସତ ମୁଁ କହୁଛି ।

ମୁଁ କଳଙ୍କହୀନତାର ଗୋଟିଏ
ନିର୍ଲିପ୍ତ ବିନ୍ଦୁ ହୋଇପାରେ ।

ହଜିଲା ଅତୀତ ମୋର ଧନେ,
ସ୍ମୃତିକୁ କାବୁଡ଼ି ଧରି
ଧାର୍ମିର ମୁହୂର୍ତ୍ତମାନ ଝାଁଞ୍ଜି ଦେଇଥିଲେ
ମୋ ଅଗଣାରେ । ଏବଂ ତାର
ଧାଗ ସବୁ ଷଡ଼ଯନ୍ତ୍ର କରୁଥିଲେ
ମୋ କୁଟୀରର ପ୍ରତ୍ୟେକ ସ୍ୱପ୍ନକୁ—ଅଶ୍ରୁକୁ
ଅତି ମଧୁର ମୁହୂର୍ତ୍ତ ଗୁଡ଼ିକୁ ।

ନଈଟିଏ ହୋଇ ବହି ଆସିଥିଲା —
ବିନ୍ଦୁ ବିନ୍ଦୁ ସବୁଜ ପାଣିରେ,
ସଜାଡ଼ି କଲା ସେ—
ମୋର ସେହି ପର୍ଣ୍ଣ କୁଟୀରକୁ । ଆଉ
କଜଳ ନେସିଲା ସେ—
ମୋର ଝରକାରେ ବଳିଷ୍ଠ ଚଉହଦୀକୁ ।

ମୋ ଆତ୍ମାର ମନ୍ଦିର ଖୋଲି,
ଅଗୁରୁ ଚନ୍ଦନର ସ୍ୱର ତୋଳି,
ଘୃତର ପ୍ରଦୀପ ଜାଳି,
ମୋ ପ୍ରେମିକାର ଫୁଲକୁ ଅଜାଡ଼ି,—
ସଂଗୁପ୍ତ ଲହରେ—ଚଟାଣ ମୋ ଧୋଇଥିଲି,
ଆଉ......।
ଆକାଶକୁ ଛିନ୍ନଭିନ୍ନ କରିଥିଲି—
ମୋର ଘାରି ଘାରି ନିଶ୍ୱାସରେ ।



Digitized by PPRACHIN, SOA

ମୁ ଜାଣେ ନା—

ମଂଦର ମୋ ଖାଲି ବାହା ପାଇଁ,
ଅଗୁର ଚଂଦନ ବାହ୍ନିଁକି—
ଷଢଠାଳ ସ୍ୱର ଚୋଳିଲେ !
ପ୍ରଦୀପ କାହ୍ନିଁକି ମୋର
ଅଂଧାରରେ ଶିଖା ଟେକିଲାନି !
ପ୍ରେମିକାର ଫୁଲ ବାହ୍ନିଁକି—
ଅଭ୍ରମାନେ ମଉଳି ଗଲାଣି······!!

ଏତେଟା ସମ୍ବଦ୍ର ଆଜି—
ଅରଣ୍ୟର ଧ୍ୱଜା ! ହଜଗଲେ,
ମୃତ୍ୟୁହୀନ ସମୁଦ୍ରତର !!
କେହୁ ହେଲେ ବହୁଲେନି—
ତରଙ୍ଗର ରଙ୍ଗ ହଜିଯିବ
ମୂର୍ଚ୍ଛନାର ଅନ୍ୟନାମ ପ୍ରତିଧ୍ୱନି ହେବ ।

ଶ୍ରୀ ଉମାକାନ୍ତ ପ୍ରଧାନ
ସୁନାବେଡ଼ା


HINDUSTAN AERONAUTICS
CONSUMERS CO-OPERATIVE STORES LTD.
**SUNABEDA-2**

Co-op. Regd.'No. 92
dated- 1-7-1966

OST No. KOI-1965
CST No. KOC-459 } Dt. 14-6-66

The Stores that looks after you

**Dealers in Medicines, General Merchandized Goods,**
**Fancy Goods, Ration Goods & Grocery etc**

STEP IN FOR QUALITY GOODS AT THE CHEAPEST RATE
WITH THE BEST SERVICE. GRAND REDUCTION SALE IN
CLOTHS AND OTHER FANCY GOODS.


Digitized by PPRACHIN, SOA

# ହୃଦୟେଶ୍ୱରୀ

ଆଜି ରାତି ପାହିଯାଉ
ହୃଦୟେଶ୍ୱରୀ
ସାତ ସମୁଦ୍ର ତେର ନଈ ଡେଇଁ
ତୋ ପାଇଁ ଆଣିଦେବି
ମନଲୋଭି ସୁବର୍ଣ୍ଣ ଖଚିତ ଆଇନାଟିଏ
ଯହିଁ ଦେଖିବୁ:
ନିଜକୁ ସକାଳକୁ ମଧ୍ୟାହ୍ନକୁ ସନ୍ଧ୍ୟାକୁ ରାତିକୁ
ବସିବାକୁ ଉଠିବାକୁ ଶୋଇବାକୁ
ଭିକାରିକୁ ରିକ୍‌ସାବାଲାକୁ ସାଇକେଲଚଢାଳୀକୁ ପୋଷ୍ଟମ୍ୟାନ୍‌କୁ
ରାସ୍ତାକୁ ପ୍ରଜାପତିକୁ ମହୁମାଛିକୁ
ବାପାକୁ ବୋଉକୁ ଲଣ୍ଠନ୍‌କୁ ଗୁବମଲ୍ଲୀକୁ ମଂଟୁକୁ ।
କିନ୍ତୁ ମତେ ଦେଖିବୁ ନାହିଁ ।
ମୋ ଛବି ମୁନ୍ନର ବର୍ଣ୍ଣବୋଧରୁ ଉଧାଇ ଯାଇଛି
ମୋ ଛବି କ୍ୟାଲେଣ୍ଡରରୁ ଖସି ଯାଇଛି
ମୋ ଛବି ଆଲ୍‌ବମ୍‌ରୁ ଚୋରି ଯାଇଛି
ମୋ ଛବି ମୋ ଛବିରୁ ଲିଭି ଯାଇଛି ।
ମୋ ଛବି ହୃଦୟେଶ୍ୱରୀ
କଅଣ ବର୍ଣ୍ଣବିଭବ ସକାଳ ହୋଇଛି ଯେ
ସ୍‌ନାନସାରି ଡ୍ରେସିଂ ଟେବୁଲ୍‌ ପାଖରେ ଠିଆ ହୋଇ
ଶୀତ ଶୀତ ଥଣ୍ଡା ହାତରେ ପୋଛୁବୁ ?
ସେ ହୃଦୟ ତୋର ପଟଚିତ
ଉଦାର ଆକାଶରେ ତାରାଟିଏ ହୋଇ ଜଳୁଛି ।
କେବେ ହାତ ବଢ଼ାଇବୁ ନାହିଁ
ସେଠାରେ ସାପର ମସୃଣ ସମୟ
ଗୋଡ଼ ଲମ୍ବାଇ ବସିଛି ।
ସୁଖ ତୋର ନୁହେଁ କି ମୋର ନୁହେଁ
ସୁଖ ଅମର ଅଥଚ
ଦୁର୍ଲଭ ବିଦେଶୀ ସମୁଦ୍ରର
ଫେନମୟ ଉଚ୍ଛ୍ୱାସରେ, ରଂଗୀନ ପକ୍ଷୀର ଉଲ୍ଲାସରେ
ତୋର ଗୋପନ ସ୍ୱାସ୍ଥ୍ୟର କଠିନ ସୁଠାମ ।



Digitized by PPRACHIN, SOA

ଦୀର୍ଘଜୀବୀ ସେ ସୁଖ
ମୋ କଟି ଦେଶରୁ ଉଙ୍କାରୁଛି
ଶାଢ଼ୀର ନକ୍ସାର ଝୀନ ଛନ୍ଦପରି
ଅନାଗତ ଶିଶୁଟିର କୋମଳ ହସପରି ।
ମୁଁ ପାଗଳ ହେଲେବି ସମାହୃତ ଏ ମୁହୂର୍ତ୍ତରେ
ଯା ସକାଳ ନେଇ ଆସିବ ତାର ଉଜ୍ଜ୍ୱଳ ପ୍ଲେଟ୍‌ରେ
ଏକାନ୍ତ ମନ୍ଦାର ତୁ ନେଇ ଆସିବୁ
ମୋର ନଗ୍ନିତ ମଶାଣି ଭିତରକୁ ଗରମ୍ ଚା କପ୍‌ରେ ।
ତୁ କଅଣ ହୃଦଚୈତ୍ୟସ୍ପର୍ଶୀ
ଚାହୁଁନା ଅପେକ୍ଷା କରିବାକୁ
ଘୁସିଛି ସନ୍ଧ୍ୟାର ପହଁରା ଶେଷଯାଏ ?
ତୁ ଜାଣୁନା
ଅପେକ୍ଷା କେଡ଼େ ଚମତ୍କାର
ଖୋଜିବା କି ବଡ଼ ଉତ୍ତେଜନା
କାନ୍ଦିବା କେଡ଼େ ଚମତ୍କାର ।

ଶ୍ରୀ ଶିଶିର କୁମାର ମହାନ୍ତି
ଜୟପୁର

*WITH COMPLIMENTS OF*

**ROURKELA STEEL PLANT**



Digitized by PPRACHIN, SOA

# ରାଣି ତୋତେ-କାଳିଆରେ.......

ଦିନେ ତୋ ସ୍ୱପ୍ନ… ମୋ ସପନ
ମିଶେଇ ଦେଖିବା…ଆରେ କାଳିଆ ।
ତା ଭିତରେ ସତ୍ୟତାର ସୀମା,
ଦେଖୁଅଛୁ. ଆଜ ମନ କମ୍ପ୍ୟୁଟରରେ ସବୁ ମପିନେବା ।
ତୋ ଦେହ ଗ୍ଲାଜଣୀ ଲାଗି
ଦରବାର ଆଜ କେତେ ମାଢ଼ସୁନା,
ତୋ ପେଟ ପାଇଁ ଲେଡ଼ା, ଆଜ
କେତେକା ପଟ୍ଟି ଭୋଗ…ସବୁ ଲେଖା କରିନେବା,
ତୁ ମୁଁ ମିଶି । ତୁ ଖାଲି ଆଦେଶ କରିଯା
ଆମେ ଅଛୁ ତୋ ସନ୍ତୋଷ ଲାଗି…
ତୋ ଘର ସୀମାଟା ଆଜ କେତେ ବା ବଢ଼େଇବା
ତୋ ସିଂହାସନକୁ ଆଜ କେତେ ବା ଉଠେଇବା
ତୁ କହ…ମୁଁ ଟିପିନେବି,
ବିଚାରଟା ଛାଡ଼ିଦେବା ରାଜାଙ୍କ ଉପରେ ।
କାଳିଆରେ !!!
ଭକ୍ତ ଡାକିଲେ ମରଣ ହେଉନି,
ସଜେଇ ହେଉ ତୁ କେବେ ଖଣ୍ଡିଆ ଦେହଟା ପାଇଁ
ଜଗତକୁ ଆମେ ଆଜ କହୁଚୁ କିପାଇଁ !!
ଦାରୁବ୍ରହ୍ମ ମୂରତି ତ ମାଟିଲା କାହିଁକି,
କେତେ ଆଜ ମନ୍ଦିରକୁ ଜଗତକୁ କହ ।
କେତେ ଆଜ ଶୁଣିବୁ ତା ଆମେ,
ତୋ ଡ଼ାହୁକ ଦେବାଧାଡ଼ ଆଜ ଯେତେ ଅଶ୍ଳୀଳ ଶବ୍ଦର
କେତେ ଆଜ ସମ୍ଭାଳିବୁ ନିଜକୁ ପରକୁ ।
ତୁ ପର କୋଳଜ ଜଗତର ନାଥ !
ତୁ କାହିଁ ବୁଝିବୁ ମାଦଳାରେ…
ତୁ ତ ଖୁସି ଫୁଲ ଫୁଲ ଝୁଲ ଝୁଲ. ତୋ ରଥରେ ବସିବା ହେବାପାଇଁ
ତୁ କାହୁଁ ଜାଣିବୁ, ସୁଖ ଦେଉଛ ଅଜ୍ଞାତ ପ୍ରାଣରେ,
ଦୁଃଖ-ଯେତେ ଭଙ୍ଗା ମଣିଷର ।
ତୃଷ୍ଣା—ଯେତେ ଲେନଦେନ୍ ଓଠର ।
ତୁ ଖାଲି ଦାରୁବ୍ରହ୍ମ ଉପାଧି ଧେନଥା ।



Digitized by PPRACHIN, SOA

ଅମ ପେଟରେ ପଡ଼େ ଓଦାକନା ପଞ୍ଝୁ,
ଆମ ଦେହ ପଡ଼େ ଲଙ୍ଗଳା ବସ୍ତ୍ର,
ତୋ ପେଟ ପାଇଁ ଲେଡ଼ା
ଅଛି କେତେବା ପଞ୍ଚଟି ଭୋଗ,
ଅବା ତୋ ଦେହ ଗ୍ରୁହଣୀ ଲାଗି
କେତେ ମାତ୍ର ସୁନା,
ମଣି, ମୁକ୍ତା, ଅବା ମୋତିର ସମ୍ଭାର,
କନ୍ଧପାରେ ଟଙ୍କା ତୋଳା, ତାଲିକା ଭରପା ।
ଆମ ଅଖିରୁ ପଡ଼େ ଲହ ଗଡ଼ୁଥାଇ,
ହେଲେ ତୋ ଦହସୁଅହସ ଦେଇମିଛ ଥାଉ,
କାଲିଆରେ···ସେ ହସର ହଚ୍ଛାସରେ
ଏ ଜଗତ ହଙ୍କାର ପାଉ ।

ପ୍ରତାପ କୁମାର ପଣ୍ଡା
କୋରାପୁଟ

ହେବ୍ହି ଏକା ସୁସନ୍ତାନ କୁଳର ଗୌରବ
ଅଣେ ଦେ ଦେଶର ପୁଣି ଅତୀତ ବିଭବ ।

—ଗୋପବନ୍ଧୁ—


**To keep the world in front of your eye**
**please go through**

AMRIT BAZAR PATRIKA, JUGANTAR, AMRIT, DHARITRI,
NIAKHUNTA & NAVBHARAT.

PROP. Every man's book links
SUNABEDA-763002





Digitized by PPRACHIN, SOA



# ଗଳ୍ପ

"ଚଳଚଞ୍ଚଳ ଜୀବନଧାରାରେ ମଣିଷ ଅନ୍ତରର
ଗୋପନ ଭାଷାକୁ ସ୍ଥିର ବିନ୍ଦୁରେ ପ୍ରତିଷ୍ଠା
କରିବାକୁ "କଥା" ଆଜି ସାହିତ୍ୟର ଅମୋଘ ଅସ୍ତ୍ର
ଭଳି ବିଦ୍ୟମାନ ହୁଏ । "କଥା" ମଣିଷର
ଭାଗ୍ୟ-ତା'ର କ୍ରୁଦ୍ଧ ପ୍ରତିଦ୍ୱନ୍ଦ୍ୱୀର
ସଜୀବ ବିଳାସଭୂମି—ଅକାଂକ୍ଷାର
ଉଦ୍‌ଗାରଣୀ ।"

## ସ୍ନେହ

ବସନ୍ତ ଦୂରରୁ ଗୋଟାଏ ପଦଧ୍ୱନି ସମସ୍ତ ପୃଥିବୀକୁ ଆସେ, ଏ କଥାଟା ଆଜି କେଜାଣି କାହିଁକି ଅଚମ୍ବିତ ଲାଗୁଥିଲା-କାହିଁକି ଲାଗୁଛି ସତେ ?

ସତ୍ୟଟା କେତେ ଛଳନା ଭିତରେ ଲୁଚକାଳି ଖେଳୁଛି ! ଭାବୁଥିଲେ ସେ ଏଇକଥା ସେତିକି ବେଳେ—ଯେତେବେଳେ ଦେଖିଲେ ତାଙ୍କ ସ୍ତ୍ରୀ ଗୁଡ଼ାଏ ପ୍ରାଇଜ୍‌ଧରି ସ୍କୁଲରୁ ଫେରିଥିବା ଚତୁର୍ଥ ସନ୍ତାନକୁ କୁଣ୍ଢାଇ ପକାଇ କହୁଥିଲେ—"କୋଟି ଦେବାଦେବୀ ପୂଜି ତୋତେ ପାଇଛିରେ ଧନ ! ତୁ ବାପ-ମାଆଙ୍କ ନାଆଁ ରଖିବୁ ।"

କିନ୍ତୁ ତୃତୀୟ ସନ୍ତାନ ତାଙ୍କ ପରିବାରକୁ ଆସିବା ପରେ ଗର୍ଭ ନିରୋଧର ସମସ୍ତ ବ୍ୟବସ୍ଥାକୁ ବିଫଳକରି ଯେଉଁ ଚତୁର୍ଥ ସନ୍ତାନ ଆଗମନ ବାର୍ତ୍ତା ପଠାଇଥିଲା, ତାକୁ ପୃଥିବୀ ଦର୍ଶନ ନ କରାଇ ଦେବା-ପାଇଁ ସେମାନେ ତ କିଛି କମ୍ ପ୍ରଚେଷ୍ଟା କରି ନ ଥିଲେ ।

ଶେଷରେ କିନ୍ତୁ ସେ ଆସିଥିଲା ବିଜୟୀ ହୋଇ ! ଆଜି ସେହି ପିଲାକୁ ତାର ମାଆ ଏଭଳି କହିବା·········

**ରତ୍ନାକର ଚଇନି**
ଓଡ଼ିଆ ଅଧ୍ୟାପକ, ଢେଙ୍କାନାଳ ମହାବିଦ୍ୟାଳୟ

Digitized by PPRACHIN, SOA

# ଅସଂଲଗ୍ନ ଉପକଥା

ମୁଣ୍ଡରେ ହାତଦେଇ ଶୂନ୍ୟମୟ ବସିରହେ । ପଡ଼ିଆରେ ଶବ ବାଛୁରି ହୋଇ ପଡ଼ିଥାଏ ଠିକ୍ ସେମିତି । ମେଘ ଗ୍ରୁଡ ଯାଏ ଆଉ ଶବ ହଜିଯାଏ କୁଆଡ଼େ । ଶୂନ୍ୟମୟ ମୁଣ୍ଡରୁ ହାତ ବାହାର କରି-ଦେଇ ପୁଣି ବସି ରହେ ।

ସୁଖ ପରେ ରାସ୍ତାରେ ଶୂନ୍ୟମୟ । କୌଣସି କାହାଣୀର ପ୍ରତ୍ୟାଶା ତାର ନାହିଁ । ଏକ ପ୍ରକାର ନିରାଶାର ନଗ୍ନଗନ୍ଧ ସେ ଶୁଂଘି ପାରୁଛି ଚାରିଆଡ଼ୁ । କେତେବେଳେ ତାର ହାତ ପକେଟରେ ତ, କେତେ-ବେଳେ ପିଠିପଟେ ଯୋଡ଼ହାତ, କେତେବେଳେ ଉଦ୍ଭ୍ରାନ୍ତ ପରି ସେ । ଅଥଚ ଶୂନ୍ୟମୟକୁ କିଛି ଭଲଲାଗୁନି । ଗୁପ୍ତ ଭିତରର କେଉଁ ଅଦୃଶ୍ୟ ପିଞ୍ଜରାରେ ଅଜଣା ଶୁଆର 'ମୁକ୍ତ ମୁକ୍ତ' ରାବ । ଶୂନ୍ୟମୟକୁ ଲାଗୁଛି କେମିତି ଦୁର୍ବାର ହୋଇଗଲା-ପରି । ଆଉ ସବୁ ମନେ ହେଉଛି-ସାଦା ସାଦା ।

ତାକୁ ନିଜକୁ ଲାଗୁଛି ଗୋଟେ ସାଧାରଣ ବାଲ୍ୟପରି । ମନ ହେଉଛି ରାସ୍ତାରେ ନାଚିବାକୁ, ଗାଇବାକୁ । କିନ୍ତୁ ପାରୁଛି କେଉଁଠି । ମଲ ମୁହାଁ ମଣିଷମାନଙ୍କର ଶକୁନିହସ ତ ବାଜୁଛି କାନରେ ।

ଶୂନ୍ୟମୟ ପକେଟରୁ ଗୁଳିକାଠି କାଢ଼ି ଦଶ ପଇ-ସିଟିଏ ବାହାର କରି ଖେଳ ଆରମ୍ଭ କରେ । ଶୂନ୍ୟକୁ ଫିଙ୍ଗି ପୁଣି ଧରିବାର ଖେଳ । କିନ୍ତୁ ଅଭ୍ୟାସ ନାହିଁ ତାର ଏ ଖେଳରେ ଆଦୌ । ରାସ୍ତାରେ ଚୁପ୍ ଚାପ୍ ଚାଲିବା, ଗୀତଗାଇବା, ବହି ପଢ଼ିବା ନ ହେଲେ ଧାଇଁବା ବ୍ୟତୀତ ସେ ଏ ଯାଏ ଆଉ କିଛି କରି-ଥିଲା ସେ ଏତେ ଭେଲଯାଏ । ତେଣୁ ଖେଳ ଭାଙ୍ଗିଯାଏ । ବିଜ୍ଞାପନୀ କାହାଣୀର ସେଇ ଅଦ୍ଭୁତ ମୁଦ୍ରାପରି ଗୁଳ—ପଇସା ମାଟିରେ ପଡ଼ିଯାନ୍ତି ।

ଶୂନ୍ୟମୟ ଏକ ବିଚିତ୍ର ଭଙ୍ଗୀରେ ନଇଁପଡ଼େ । ଉଠିବାକୁ ଗଲେ ଏମିତି ନଇଁବାକୁ ତାକୁ ଭଲ-ଲାଗେ । ବୋଧହୁଏ ସେଇ ନଇଁବାର ଭଙ୍ଗୀରେ ଭଲ୍ଲୁକାରେ ଭବିଷ୍ୟତର ଚିତ୍ର ଅଙ୍କିଦିଏ । ଘରଟିଏ, ପ୍ରେମିକା ବା ପତ୍ନୀଟିଏ, ଛୁଆଟିଏ । କଷ୍ଟ ହୁଏ ସିନା, ଏମିତି ନଇଁବାରେ ସେ ବିଭୋର ହୋଇଯାଏ ଓ ରାତି ଅନିଦ୍ରା ରହି କାହାଣୀ ପଢ଼ିବା ପରି ଅନୁଭବ କରେ ।

ଏପରିକି ଶୋଇଲା ବେଳେ ବି, ସେଇ ବିଭୋରତା, ସେଇ ଅନନ୍ଦର ରେଖାଥାଏ ତାର ମୁହଁରେ । ଆଉ ସିଏ ନିଦରୁ ଉଠି ଭୟ କରିବାକୁ ଚାହୁଁ ନ ଥାଏ ସେତେବେଳେ ମୋଟେ ।

କିନ୍ତୁ କେମିତି ନା କେମିତି ଭୟ ଚାଲିଆସେ ନିଦ ଭାଙ୍ଗିଲା ପରେ । ମୁହୂର୍ତ୍ତିକର ହେଉ ବା ହେଉ ଯୁଗ ଯୁଗର, ଭୟତ । 'ଭୟ', ନିଜ ଭିତରେ ଶୂନ୍ୟ-ମୟ ଶବ୍ଦଟିଏ ଉଚ୍ଚାରଣ କରେ ଓ ମୁଣ୍ଡରେ ହାତ ଦେଇ ବସି ରହେ ।

ସୁଖ ପରେ ଶୂନ୍ୟମୟ କ୍ଳାନ୍ତ ପାଦରେ ଆଗେଇ ଚାଲେ ନିତ୍ୟକର୍ମ ପାଇଁ । ତାଙ୍କ ସହରର ପ୍ରାକୃତିକ ଖୋଲା ପଡ଼ିଆ-ପାଇଖାନାରେ ସେ ଘାସ ଉପରେ ପାଦ ଘସି ଘସି ଚାଲି ଚାଲେ । ପବନକୁ ଧକକା ଦିଏ । ଝରଣାର ପାଣିକୁ ମୁହୂର୍ତ୍ତିକ ପାଇଁ ହାତରେ ଅଟକାଇ ଦିଏ । ମୁହଁକୁ ଅଣ୍ଟାକରେ । ବେଳେ ବେଳେ ଅମାନିଆ ଟିଲାପରି ଗାଧୋଇ ପକାଏ ।

ଆପାତତଃ ଉଲ୍ଲେଖଯୋଗ୍ୟ ଘଟଣା ହେଲା ବିଦାୟ ପର୍ବ । ଶୂନ୍ୟମୟ ସତେଜ କବିତା ସୃଷ୍ଟିଟିଏ । ପେଙ୍ଗୁଆ ଛୁଟି ଦିନକୁ ବାଦ ଦେଲେ ୯ଟା ୪୦ରେ ଝିଅ ଅନାମିକାମାନଙ୍କୁ ବିଦାୟ ଦେଇ ଗୋଟିଏ ଏମିତି ସାମ୍ରାଜ୍ୟକୁ ସେ ଆସେ ଯେଉଁଠି ବେଲୁନ୍‌ରେ ଯେତେ ପବନ ଦେଲେ ବି ବେଲୁନ୍ ଫୁଟେନା । ତାହାଲା ଶୂନ୍ୟମୟର ଚାକିରିଆ ଜୀବନ । ସେଠାରେ ମୁଣ୍ଡରେ ହାତଦେଇ ପୁଣି ବସିପଡ଼େ । ଅଲଗା ଜନ୍ମଥିଲେ ବି ଅନ୍ଧକାର ଦେଖେ । ସବୁ ମଣିଷମାନେ ତାଙ୍କ ଲଟନ୍ତ ଖୋଲଗଲେଇ ହେଲପରି ।

ମନେ ମନେ ଝୁରିହୁଏ ଶୂନ୍ୟମୟ । ସବୁର ଭିତରର ଯଦ ଦୁଃଖର ସମୁଦ୍ର, ଏକାକୀତ୍ୱର ଆକାଶ, ଏମିତି ବୁଢ଼ୀ ଅସୁରୁଣୀ ପରି ସଭିଏଁ ବସିରହୁଛନ୍ତି କାହିଁକି ? ସତକଥା, ଶୂନ୍ୟମୟର କିଛୁନା କିଛୁ ଅପରାଧ କରିଦେବାକୁ ସେତେବେଳେ ପ୍ରବଳ ପିପାସା ଜାଗେ ।

ଏବକ ସମୟ ଏମିତି ହେଇ ଆସିଲାଣି ସେ ଦୁଃଖାନ୍ତକ ନାଟକର ଦୃଶ୍ୟମାନଙ୍କ ସାମ୍ନାରେ ବସିରହି ମଧ୍ୟ ଶୂନ୍ୟମୟ କାମନାରେ ଉତ୍ତେଜିତ ହେଇପଡ଼େ । ମନେହେଉଛି ପ୍ରେମିକାକୁ ମଧ୍ୟ ପ୍ରତାରଣା କରିଦେବ । କିନ୍ତୁ ଶୂନ୍ୟମୟର ପ୍ରେମିକା କାହିଁ ? ବେଦ ଉପରେ ବସି ବାହାହେବାକୁ ତାକୁ ଡ଼ର-ମାଡ଼ୁଛି ।

ଗୁଆଘିଅର ପୋଡ଼ାଧୂଆଁରେ ସେ ଅଣନିଶ୍ୱାସ ହେଇଯାଉଛି । ନୀତିଦାସଟିଏ ପାଲଟି ଯାଇଛି କେମିତି କେଜାଣି !

ଅଥଚ ଚୁପ୍ ରହିବାବିନା ଉପାୟ ନାହିଁ ତାର । ପାଟିକଲେ ଆଖିସାମ୍ନାରେ ଜେଲ୍‌ର ପାଚେରି ଅଳ ଲୁହାକଡ଼ ନାଚିଯାଉଛି । ସ୍ୱପ୍ନପ୍ରବଣ ହେଲେ ମନଦର୍ପଣରେ ସେ ଦେଖିଛି ମାତ୍ର ଗୋଟିଏ ନୂଆପଇସା । କାନ୍ଦପକାଇଲେ ସେ ଦେଖୁଛି ତାପାଇଁ ପୋଷ୍ଟମେନ୍‌ର ବେଗ୍ ଖାଲି ।

ଶୂନ୍ୟମୟ ! ଏକାକୀ ଶୂନ୍ୟମୟ ! ତାପରେ ମୁଣ୍ଡରେ ହାତଦେଇ ସେ ବସିପଡ଼ୁଛି । ଏବେ ଯେବେ ସେ ଘର ସାମ୍ନାରେ ଠିଆହୋଇଯାଏ ଦେଖିବ ମୀଳନଙ୍ଗର ଯାନ ତାଲାଟିଏ ଝୁଲୁଛି । ଅଥଚ ତା ପକେଟରେ ଚାବିକାଠି ନାହିଁ । ସେମିତି ଆଲ୍‌ବମ୍‌ରେ ତାର ନମାବୋଉ, ଭାଇଭଉଣୀ ସମସ୍ତଙ୍କର ଫଟୋ, ଅଥଚ ପାଖରେ କେହି ନାହାନ୍ତି ! ସମସ୍ତେ କାହିଁ କେତେ ଦୂରରେ ।

ଶୂନ୍ୟମୟ ଜଣେ ଦିନେ ନା ଦିନେ ଦୁଃଖ ଭୁଲି ହେଇଯିବ, କିନ୍ତୁ ପ୍ରେମିକା ପାଖକୁ ଚିଠି ବା ଗୀତ ଲେଖୁଥିଲାବେଳେ ସେ ସବୁ ଦିନେତ କାନ୍ଦ ପକାଉଛି ।

**କୈଳାସ ଚନ୍ଦ୍ର ଷଡ଼ଙ୍ଗୀ**
କୋରାପୁଟ





Digitized by PPRACHIN, SOA

# ଘୋଡ଼ାର ଅନ୍ୟ ନାମ ଜେବ୍ରା

ସୁଲତା,

ହୃଦୟହୀନ ମେଟାଲ୍ କମ୍ବା କେମିକାଲ୍‌ର କମ୍ପାଉଣ୍ଡ ନୁହେଁ ଯେ ତାକୁ ବାରମ୍ବାର ଭାଙ୍ଗିଦେଲେ ପୁଣି ଯୋଡ଼ିହୋଇ ହେବ । ଚିଠି ତମ ପାଖକୁ ଲେଖି ନ ଥାନ୍ତି, କିନ୍ତୁ କୋର୍ଟଘର ଭିତରେ ଜଜ୍ ସାହେବଙ୍କର 'ଶୁଣାଣି' ଶୁଣିବା ପରେ ତମର ଦୟନୀୟ ଅବସ୍ଥା ଏବେ ବି ମୋର ମନେ ପଡ଼ୁଛି । ତମର ସେଇ ଶିର ହସନ୍ତ ମୁଖମଣ୍ଡଳର ବିଷାଦମୟ କାଳିମା ଘୁମନ୍ତ ବକ୍ଷର ଲୋତକଧାର ଏବେ ବି ଭଲଭାବରେ ମନେ ପଡ଼ୁଛି । ତମେ ଜାଣ ସୁଶାନ୍ତ ଚୌଧୁରୀ ଜଣେ ବ୍ୟବସାୟୀ । ଲାଭ, କ୍ଷତିର ହିସାବ କଡ଼ା କଡ଼ା ଭାବରେ ଧରି ବସିଲେ ତା' ଜୀବନ ଧାରାରେ ପୂର୍ଣ୍ଣଚ୍ଛେଦ ପଡ଼ିବ । ଏତଣୁ ହିସାବ କରିନି ମୁଁ, ତମକୁ ବିବାହ କରି ମୋର କେତେ ଲାଭ ହେଲା କିମ୍ବା ଡାଇଭର୍ସ କରି କ୍ଷତି କେତେ ହେଲା । କିନ୍ତୁ ମୁଁ ବେଶ ଅଛି, ମୋର ସ୍ୱାଧୀନତା ଅକ୍ଷୁର୍ଣ୍ଣ ରହିଛି । ମାତ୍ର ତମେ ହାରିଗଲ ସୁଲତା । ଏକାନ୍ତ ଭାବରେ ହାରିଗଲ । ତମ ଭଳି ଝିଅ ବିଂଶ ଶତାବ୍ଦୀରେ ଦ୍ୱିତୀୟାର୍ଦ୍ଧରେ ଜନ୍ମ ନ ନେଇ ପ୍ରାଚୀନ ପ୍ରସ୍ତର ଯୁଗରେ ଜନ୍ମ ନେବାରଥିଲା । ଯେତେବେଳେ ମଣିଷ ଚନ୍ଦ୍ରମଣ୍ଡଳରେ ଆସ୍ଥାନ ଜମାଇବାକୁ ପରିକଳ୍ପନା କରୁଛି, ଭାଷାକୋଷରୁ "ମୃତ୍ୟୁ"ର ନାମ ବିଲୁପ୍ତ କରିବାକୁ ଆଗେଇ ଆସୁଛି, ତମେ ସେତେବେଳେ ହିନ୍ଦୁ ପତିବ୍ରତା ନାରୀର ଦାୟି ନେଇ କ୍ଲବ ଯାଇ ପାରିଲନି, ସ୍ୟାମ୍ପେନ୍‌ର ସ୍ୱାଦ ଗ୍ରହି ପାରିଲନି, କ୍ୟାବରେଟ୍ ଡ୍ୟାନ୍‌ସର ଆମୋଦ ଉପଭୋଗ କରି ପାରିଲନି । ଏ ସବୁ ଭାବିଲେ ମୁଁ କ'ଣ ଅନୁମାନ କରେ ଜାଣ, ତମେ ଆଉଟ୍‌ଡେଟେଡ୍ ହୋଇ ଯାଇଛ ଏକାନ୍ତ ଭାବରେ ଆଉଟ୍‌ଡେଟେଡ୍ !

ସୁଲତା, ଜୀବନର ପଥ ବହୁତ ଦୀର୍ଘ । ଏଇ ଦୀର୍ଘତମ ରାସ୍ତା ଭିତରେ ଘଟଣା ଦୁର୍ଘଟଣା ଗୁଡ଼ାକ ଦୁଇ ଫୁଟିଆ ମାଇଲ ଖୁଣ୍ଟ ଭଳି ଖୁବ୍ କ୍ଷୁଦ୍ର ହୋଇ ଛିଡ଼ା ହୋଇଛନ୍ତି । ତାକୁ ଦେଖି ଭୟ କଲେ କ'ଣ ଏ ଦୀର୍ଘତମ ରାସ୍ତାକୁ ଅତିକ୍ରମ କରି ହୁଏ ? କିନ୍ତୁ ନିର୍ଭୟରେ ଆଗେଇବାକୁ ପଡ଼ିବ । ଏଠି ପୁରାଣ କଥିତ ସୀତା ସାବିତ୍ରୀ କେବଳ କାଳ୍ପନିକ ଚରିତ୍ର ହୋଇ ସ୍ମୃତିର ଅତଳ ଗର୍ଭରେ ଲୀନ ହେଲେଣି, ଆଉଟ୍‌ଡେଟେଡ୍ ହୋଇ ଗଲେଣି । ଅଧୁନା ଗୀତା, ମେରିଅ, ଜୁଲିଏଟ୍ ଓ ଶ୍ୟାମା ବାନର୍ଜୀ ଭଳି ଝିଅମାନଙ୍କର ଆବଶ୍ୟକତା ଅଛି,— ଯେଉଁମାନେ ନିର୍ଦ୍ୱନ୍ଦରେ ଯେ କୌଣସି ଇତର ପୁରୁଷର ବାହୁରେ ବାହୁ ଛନ୍ଦି କ୍ଲବ ଡ୍ୟାନସ୍ କରି ପାରିବେ ବିନା ଦ୍ୱିଧାରେ ସ୍ୟାମ୍ପେନ୍ ପିଇ ପାରିବେ, ନିର୍ବିକାର ଭାବେ ଦେହକୁ ଦେହ ଲଗାଇ ରାତ୍ରି ଯାପନ କରି ପାରିବେ ।

ମୁଁ ମାତାଲ୍ ହୋଇ (ତମ ଭାଷାରେ) ସେଇ ଅଶ୍ଳୀଳ କାମାତୁର ଝିଅଗୁଡ଼ାଙ୍କୁ ଧରି ଫ୍ଲାଟକୁ ଫେରିଲେ ବେଳେ ତମେ ଠାକୁର ଘରେ ପୂଜା କରି ବସ । ମୁଁ ଉତ୍କ୍ଷିପ୍ତ ହୁଏ, ତମେ କ'ଣ ଏବେ ବି କହୁଛ ଭୁଲ୍ କରୁଥିଲି ବୋଲି । ସୁଲତା, ଜୀବନଟା ଭିଷଣ-ଭାବେ କ୍ଷଣସ୍ଥାୟୀ । ତା ଭିତରେ ଯୌବନ ଅଧିକ କ୍ଷଣସ୍ଥାୟୀ । ଯେତିକି ଦିନ ବଞ୍ଚି ରହିବ, ସୁଖରେ ବଞ୍ଚିବ । ପୃଷ୍ଠଗତିମୟ ଦୁନିଆଁକୁ ଭୁଲିବାକୁ ହେଲେ ତମକୁ ସ୍ୟାମ୍ପେନ୍ ପିଇବାକୁ ହେବ, ଗୀତା, ଜୁଲି ଓ ଶ୍ୟାମା ବାନାର୍ଜୀ ଭଳି ସ୍ତ୍ରୀମାନଙ୍କ ସଙ୍ଗେ ମିଶିବାକୁ ପଡ଼ିବ । ମତେ ତମେ କହି ପାରିବ ସୁଲତା, ତମ-ଭଳି ଜଣେ ଅବଗୁଣ୍ଠନବତୀ ପତିବ୍ରତା ନାରୀ, ଘରର ଚାରିକାନ୍ଥ ମଧ୍ୟରେ ଅବଦ୍ଧ ରହି କ'ଣ ତମର ସୁଶାନ୍ତ



Digitized by PPRACHIN, SOA

ଯୌବନଶ୍ରୀକୁ ପଞ୍ଜରା ଭିତରେ ବାନ୍ଧି ରଖି ପାରିଲି ? କିନ୍ତୁ ଶ୍ୟାମା ବାନାର୍ଜୀ, ଯାହା ଶରୀର ମାନଚିତ୍ରର ସମସ୍ତ ଅକ୍ଷାଂଶ ଦ୍ରାଘିମାକୁ ମୁଁ ପ୍ରାୟ ମୁଖସ୍ତ କରି ନେଇଛି—ତା'ର ସ୍ୱାମୀ ତାଙ୍କୁ କେତେ ପ୍ରେମ କରେ । କୌଣସି ଦିନ ମାତାଲ ଅବସ୍ଥାରେ ଶ୍ୟାମାବାନାର୍ଜୀ ଉପରେ ଶରୀରର ସମସ୍ତ ଭାର ଛାଡ଼ିଦେଇ ଠେଲି ଠେଲି ଯଦି ମୁଁ ତା ଫ୍ଲାଟର ପହଞ୍ଚେ, ତାର ସ୍ୱାମୀ ପୁଣି ହ୍ୱିସ୍କି ଦେଇ ମୋତେ ଅଭ୍ୟର୍ଥନା କରେ । ଆଜି କାଲି ସି-ଭ୍ୟୁ ହୋଟେଲର ସେଇ ସତର ନମ୍ବର କୋଠରୀ ଭିତରେ ତା ଶରୀରର ସବୁ ନଗ୍ନ ଆବରଣକୁ ଖୋଲିଦେଇ ମୋ ଉପରକୁ ଲମ୍ଫ ପ୍ରଦାନ କରେ ବୋଲି, ତମେ କ'ଣ ଭାବୁଛ ସେ ବିବାହ କରି ପାରିବନି । ଏବେ ବି ବହୁ ସୁ-ପୁରୁଷ ତା ପାଇଁ ଅପେକ୍ଷା କରିଛନ୍ତି ।

ମୁଁ ସେ ଦିନ ତମକୁ ବା କ'ଣ କହିଲି, ଚିଫ୍ ଇଂଜିନିୟର ସତ୍ୟେନ ମାଲହୋତ୍ରା ସଙ୍ଗରେ ଗୋଟାଏ ରାତି କଟାଇବା ପାଇଁ । ତମେ ଜାଣିନ, ସତ କିନ୍ତୁ ହେଲାନି ସତ୍ୟେନ ମାଲହୋତ୍ରାର । ଯାହା ହେଲା ମୋର । ସାତଲକ୍ଷ ଟଙ୍କାର କଣ୍ଟ୍ରାକ୍ଟ ହାତଛଡ଼ା ହେଲା । କିନ୍ତୁ ସେ ଦିନ ତମର ସତୀ, ସାବିତ୍ରୀ ଦେଶର ମହିଳାମାନଙ୍କ ଭିତରୁ ଆଜି ବେଶ୍ କେତେଣି ସତ୍ୟେନ ମାଲହୋତ୍ରା କୋଳରେ ଥାଇ ତା' ସ୍ୱାମୀକୁ ଦୁଇଲକ୍ଷ ଟଙ୍କାର ଲାଭ ଦେଖାଇଥିବେ । ତମେ ତ ଏ କଥା ଭଲଭାବରେ ଜାଣିଥିବ ସତ୍ୟେନ ମାଲହୋତ୍ରାର ସ୍ତ୍ରୀ ରାତି ରାତି ମୋ ସଙ୍ଗରେ ସି ଭ୍ୟୁ ହୋଟେଲରେ କଟାଇଛି । ମୋ ଦେହର ସମସ୍ତ ଉତ୍ତାପକୁ ସେ ଦିନେର ଗ୍ରହଣ କରିଛି । ତାକୁ କ'ଣ ସତ୍ୟେନ ମାଲହୋତ୍ରା ଡାଇଭର୍ସ କରିଛି ?

ତମେ ଫନ୍ଦରେ ପଡ଼ିଗଲ ସୁଲତା । ବହୁତ ପଛରେ । ଦୁଇଟା ସମାନ୍ତରାଳ ସରଳରେଖାକୁ ଯୋଗ କରାଯାଇ ପାରେନି । ଏତେବଡ଼ ସତ୍ୟ ତମେ ଜାଣେ ସତ୍ତ୍ୱେ, ସ୍ୱାମୀ ପତିବ୍ରତା ନ ଥିଲି ମୋର ନିର୍ଜୀବ ଫଟୋ ପାଖରେ ଅଶ୍ରୁ ତର୍ପଣ କରୁଥିବ, ଭଗବାନ ବୋଲି ଗୋଟାଏ କାଳ୍ପନିକ ଅଥର୍ବ ତମକୁ ସାହାଯ୍ୟ କରିବାକୁ ଆଗେଇ ଆସିବନି । ଦୁନିଆକୁ ଚିହ୍ନିବାକୁ ଚେଷ୍ଟା କର ସୁଲତା । ଅଥଚ ଦେଖ ବୋଲି ଜଣେ ଥିବା ବ୍ୟକ୍ତିର ଶକ୍ତି ନଷ୍ଟପ୍ରାୟ ହୋଇଛି । କାରଣ ହଜିବାର ଚାବିଥିବ ଟଙ୍କା ବୋଲି ଜିନିଷଟା ଆମ ପାଖରେ ଯଥେଷ୍ଟ ଅଛି । ଭଗବାନ ଭଳି ତଥାକଥିତ କାଳ୍ପନିକ ଶକ୍ତିକୁ ଚିନ୍ତା କରିବାର ସମସ୍ତ ଅନ୍ତ ନାହିଁ । ଯେକୌଣସି ଉପାୟରେ ବ୍ୟାଙ୍କ ବାଲାନ୍ସ ବଢ଼େଇବାକୁ ପଡ଼ିବ, ଓଭରଟାଇମ ଜମା କରିବାକୁ ଅଛି ଏବଂ ଫ୍ରେଞ୍ଚ୍ ପର୍ଫ୍ୟୁମ ଥିଲେ ତମ ଭଳି ବହୁ ସୁଲତା ମୋର ତଥାକଥିତ ଚରିତ୍ରକୁ ଭ୍ରୂକ୍ଷେପ ନ କରି ତମର ପୂର୍ବ ସ୍ଥାନ ଅଧିକାର କରିବାକୁ ଆଗେଇ ଆସିବେ ।

ତମ ପାଖକୁ ଏଇ ମୋର ଶେଷ ଚିଠି । କଟକରଡ଼ିଙ୍କ ହୁକୁମନାମା ପ୍ରତି ମାସରେ ପାଉଣାଟା ତମ ପାଖକୁ ନିଶ୍ଚୟ ପଠାଇବ । ରହିଲି ।

ତମର
ସୁଶାନ୍ତ

ରବୀନ୍ଦ୍ର କୁମାର ପଣ୍ଡା
ସୁନାବେଡ଼ା—୨

ନରପିତ୍ରେ ପ୍ରେମ ଏକ ଅମର ସଞ୍ଚାର
ପାର୍ଥିବ ଜଗତେ ପ୍ରେମ ସ୍ୱର୍ଗ ସୁଧାଧାର

ଗୋପବନ୍ଧୁ

# ଶେଷ ସନ୍ତାନ

ହେଇ ! ସୁପ୍ରୀତ ଶୋଇ ପଡ଼ିଛି । ଶୋଇଥାଉ । କିନ୍ତୁ ଏଠା ବସନ୍ତର କୌଣସି ଏକ ରବିବାର ଯେ ! ମିକି ଶୋଇ ପଡ଼ିଛି ସମରେ । ସୁପ୍ରୀତର ସବୁରୂପ ଛଡ଼ାଇ ନେଇଛି ଯେମିତି । ସିଲ୍‌ଟ ବସ୍ତ୍ରାନ୍ତ କେମିତି ଅଲଗ କରିପକାଇଛି । ଆରେ ମିଠୁ କାହିଁ ?

ଓଃ ହେଇ ଦୁଷ୍ଟ ! କୁକୁରର ଛୁଆଗୁଡ଼ାକ ଦୁଧ ପିଉଛନ୍ତି ତାଙ୍କ ମାଠୁଁ । ମିଠୁଟା ସେଗୁଡ଼ାକୁ ଝିଙ୍କିବାରେ ଲାଗିଛି । ସ୍ନେହମୟୀ କୁକୁଟା ଖାଲି ଗଁ ଗଁ ହେଉଛି । କୁକୁଟା ସଳରେ କି ଉଜଳ ଉଜଳ ସୁନ୍ଦର ଦିଶୁଛି ଯଦିଓ ତାଟି ବସନ୍ତର ଅପରାହ୍ଣ । ସେଇ କୁକୁଟା'ର ଛୁଆପିଲାମାନଙ୍କ ପ୍ରତି ଟିକିଏ ହେଲେ ଦୟା ନାହିଁ । ସବୁ ଖାଇ କୁଆଡ଼େ ବୁଲି ଯାଇଛି, ଅଜ ନେଞ୍ଜରି ଅଣିଆ ପିଲାଗୁଡ଼ାକ ଲଞ୍ଜ ହଲାଇ ଶିହ୍ନା ଅଶିହ୍ନା ନିର୍ବିଶେଷରେ ସମସ୍ତଙ୍କୁ ଆନୁଗତ୍ୟ ଜଣାଉଛନ୍ତି ଅଯାଚିତଭାବେ ।

ମିଠୁ ! ମିଠୁ ! ଶୁଣିବକି କାହିଁକି ? ଖେଳୁଥାଉ । ଆରେ ଟିଠୁ କାହିଁ ?

ଓଃ ହେଇ ପେଣ୍ଟରର ହାତୀ ମୁଣ୍ଡ ଧରେଇ ହେଉଛି ଏଁ…ଏଁ—ଆଖି ଓ ନାକରୁ ଝରଝର ଝରକା ଝର ଝର ପଡ଼ୁଛି…ପଡ଼ୁଥାଉ…।

ଓଃ ହୋ ! ଓଃ ହୋ ସୁପ୍ରୀତଙ୍କ ଅଚାନକ୍ ତାଙ୍କ ଦେହ ସମ୍ଭ୍ରମରୁ ଭାସି ଉଠିଲା ମୁଣ୍ଡକାଟି ସବାସାନ ଲିଟି ଶୋଷିବାରେ ଲାଗିପଡ଼ିଛି—ଲାଗିଥାଉ । ହେଲେ କିଛି ମିଳୁଛିତ ? ଶୁଖିଲା ? ଓଃ ହୋ…ଓଃ ହୋ…

ସୁପ୍ରୀତ ! ମିକି ! ମିନୁ ! ଟିଠୁ ! ଲିଟି ! ଆଉ ହେ ଅନାଗତ ! ତମେମାନେ ସବୁ କିଏ ? ଅନଙ୍ଗଭୀମର ଭ୍ରମବୃତ୍ତି ଭିତରକୁ କିଏ ସେ ନିର୍ବୋଧ ଠେଲିଦେଲା ? ତୁମେମାନେ ଅବା ଆସୁଥିଲ କାହିଁକି ?

ଅଧା ମଳି ମଳି ମୁହଁ ଧୋଇ ଗ୍ଲାସେ ପାଣି ପିଇଲେ ଅନଙ୍ଗଭୀମ । ଫେବୃୟାରୀର ମଧ୍ୟାହ୍ନ ଓ ଅପରାହ୍ଣ ଭେଟେ…ହୁଁ ହୁଁ…ମିଠା ସତରେ । ଛଅଟି ବସନ୍ତ ଘୋଡ଼ାଇଥିଲା ଦେଇଛି । ସୁପ୍ରୀତ ! ସମସ୍ତେ ସତର ଭେଟିଲେ ସ୍ନୋପଏକକ । ଏଣୁ ସୁପ୍ରୀତ ଦେହରେ ଅଠର ବର୍ଷ ଧରି ବସନ୍ତଗୁଡ଼ାକ ଭେଟିକି ଗହଳ ରଙ୍ଗ ଲିପିଥିଲେ, କିନ୍ତୁ ଏଥି ଛଅଟି ବସନ୍ତ ସବୁରଙ୍ଗ ଶୋଷି କରି ନେଇଗଲେ କେମିତି ? ବସନ୍ତ ତୋର ମୃତ୍ୟୁ ହେଉ । ଅନା ଯାନା । ରହ ରହ ରହ ! ଲିଟି ତୁ ବଦଳର !

ହେଇ ସ୍ୱର୍ଣ୍ଣଗର୍ଭା ସୁପ୍ରୀତ ରୁପା ପାହାଡ଼ଟିଏ ରଚିଛି ନିଜ ଦେହରେ ତା ଭିତରେ ସେ ପ୍ରତିବର୍ଷ ଲୁଚେଇ ଲୁଚେଇ ଦେବତାର ଫୁଲ ଧରିଆସେ… ନିଅ ନିଅ ଫୁଲ ନିଅ ଦେବତାର ଫୁଲ…କିନ୍ତୁ ମଲ୍ଲାଣି ପରି ସେ ତ କେବଳ ପ୍ରତିଦାନ ଗୁହେଁନା ! ଦେଇଯାଏ ଖାଲି ମାଳା ! ନିଅ ନିଅ ଗୁଚ୍ଛରେ ଲଗାଅ ଦେବତାର ଫୁଲ ।

ଅନଙ୍ଗଭୀମ ଯେଉଁଦିନ ପ୍ରଥମ ଫୁଲଟି ତୋଳି ଧରିଥିଲେ ତାଙ୍କ ଆଖିରୁ ସ୍ୱାଭାବିକ ଝର ଝର ଝରି ପଡ଼ିଥିଲା । ପିତୃତ୍ୱର ଗୌରବରେ ସେ ଚଞ୍ଚଳ ହୋଇ ଉଠିଥିଲେ । ଅନଙ୍ଗଭୀମ ଯେଉଁଦିନ ଦ୍ୱିତୀୟ ଫୁଲଟିର ସନ୍ଧାନ ପାଇଲେ ସେ ଦିନ ନିଜକୁ ବିଶ୍ୱାସ କରି ପାରି ନ ଥିଲେ । ନିଜର ଶକ୍ତିକୁ ବି ବିଶ୍ୱାସ କରି ପାରି ନ ଥିଲେ । ଏତେ ଶୀଘ୍ର କ'ଣ ଦେବତାର ଫୁଲ ଅସିଯାରେ ? ଆସିଛି ଯଦି ରହୁ । ଗୁଚ୍ଛରେ ଲଗୁ… ଟଳାରେ ଝୁଲୁ…ଆପତ୍ତି ନାହିଁ-ଦେବତାର ଫୁଲ ଯେ ! ତୃତୀୟ ଫୁଲ ଯେତେବେଳେ ଫୁଟିଲା—ଅନଙ୍ଗଭୀମ ଦେଖିବାକୁ ଆଗ୍ରହ କରି ନ ଥିଲେ । ଫୁଲଟିକୁ ରଞ୍ଜାଇ ରଖିବେ କେମିତି ?

ସୁପ୍ରୀତ କହିଲେ 'ଏ ଦେବତାର ଫୁଲ'

ଅନଙ୍ଗଭୀମ ଭୟଭୀତ ହୋଇ କହିଥିଲେ 'ହଁ'

ଅହା ! ସ୍ୱା ଭିତରେ ଚତୁର୍ଥ ଫୁଲ ଫୁଟିଯାଇଥିଲା…





Digitized by PPRACHIN, SOA

ଶୀତଳ ହୋଇ ଅନଙ୍ଗଭୀମ ଗୃହିଁଥିଲେ ।

ଏଇ ସେଇ ଲଟି ! ଲଟି ? କ'ଣ ପାଉଛୁ ? ଗ୍ଲୁକୋଜ ନା ପ୍ରୋଟିନ୍ ? ଖାଦ୍ୟସାର ନା ଅନ୍ୟ କିଛି ? ଭୟଙ୍କର ଲଟି ! ଭୟଙ୍କର !

ଏଇ ଯେ ଚମ୍ପା ଫୁଲର କଢ଼ ଫୁଟି ଆସୁଛି । ଗୋଲାପ ନୁହେଁ । ରଜନୀଗନ୍ଧା ନୁହେଁ, ରକ୍ତପଦ୍ମ ନୁହେଁ କିମ୍ବା ନୀଳକମଳ ନୁହେଁ । ହେଲେ ଏ କଳିଅର ! କଳିଅର ? ଛୁଇଁବାଇ ନୋଇଁବାକୁ ହାତ ବଢ଼ାଇଥିଲେ ଅନଙ୍ଗଭୀମ । କାହିଁକି କେଜାଣି ହଠାତ ପଛକୁ ଫେରି ସ୍ତବଧ-ହୋଇ ଠିଆ ହୋଇଥିଲେ ଅନଙ୍ଗଭୀମ । ହାତ ତାଙ୍କର ଥରି ଉଠିଲା । ଗଛର କୋଣ ଉହାଡ଼ୁ ସୁପ୍ରୀତଙ୍କ ଟିକି ମୁହଁଟି ଚାହାଁଚି ଆସି କହିଲା ଥାଉ ! ଥାଉ ! ଯେମିତି ମଞ୍ଜି ପୋତୁଛ, ସେମିତି ଫଳ ପାଇବ । ଲଗାଉଥିଲ କାହିଁକି । ଯାଅ ଫେରିଯାଅ ।

କିନ୍ତୁ ସେ ଧ୍ୱନ ସୁପ୍ରୀତଙ୍କ ମୁହଁରେ ଅସ୍ୱାଭାବିକ ଅଭିମାନ ଥିଲା—ବିଷଣ୍ଣତା ଥିଲା—ପାଣ୍ଡୁରତା ଥିଲା-ସୁପ୍ରୀତ କ'ଣ ବା ପାଇଲା ? କଥିତ ବସନ୍ତର ସହିତ ସମ୍ପଦ ଖୁବ୍ କମ୍ ଦିନରେ କେଉଁ ଏକ ପୁରୁଷକୁ କମ୍ ମୂଲ୍ୟରେ ବିକାହେବା କ'ଣ ନାରୀ ଜନ୍ମର ସାର୍ଥକତା ? କିଏ ଜାଣେ ଅଭାବ ହୋଇଥିବ ।

ଆହା ସୁପ୍ରୀତ ! ତମର ସେଇ ଯେଉଁ ଜଳାଭରା ଆଖି ଦିଟା ମ ଯେ କି ଭାସି ଭାସି ପହଁରି ଯାଉଥିଲା ଆଜି ଏମିତି କଳା ବାଲିରେ ଭିତରେ ଲୁଚି ହେଉଛି କାହିଁକି ?

ଅନଙ୍ଗଭୀମ ସିଗାଲେଟ୍ ସେଣ୍ଟରେ ଦେଲେ ।

ଚଡ଼ ଚଡ଼ ହୋଇ ବିଜୁଳି ଦୁଆରର ଦେହଉଠି କହିଲା 'ଓଃ ହୋଃ ! ଜଗ୍ଗା ନାହିଁ ନେଇଁ । ଲାଇଟ୍ ନେଇ ଜ୍ୟାଦା ଲାଗେ । କପିଖାଲି ଦସ୍ତକେ ଚିନ୍ତାକାର କାରେ ।' ଅଫ୍ କଲେ । ଇତନେ ବଡ଼େ । ଇତନେ ବଡ଼େ ! ମୁଁ ଙ୍କ ଆଖି ଫୁଟିଯାଉ । କପି ଖାଲି ଦସ୍ତକେ ଚିନ୍ତାକାର କରେଁ । ସବୁରେ କ'ଣ ଖାଲି ବସ୍ ଅସିବ ? ନହେଲେ କେତେବେଳେ ଯାଏ ପଛେ ପିଲାଙ୍କୁ ଧରି ଲୋକଟା କେଉଁ ଅପେକ୍ଷା କରିବ ?

ଏ ଲୋକଟା ଅନଙ୍ଗଭୀମ ନୁହଁନ୍ତି ତ ? ନାଁ ନାଁ··· ହଁ ··ହଁ···ସୁପ୍ରୀତ ! ସୁପ୍ରୀତ ! ଉଠ ।

କୁଳୁକୁଳୁ ରୁପେଲି ଫସ୍ଲିକା—ଜିଭ କାମୁଡ଼ି ପକାଇଲେ ଅନଙ୍ଗଭୀମ । ଅବଚେତନ ମନର ଉଚ୍ଚାରଣ ।

ସୁପ୍ରୀତ ଉଠିଲେ ଏବେ ଟିଠୁ ଉପରେ ଶ୍ରାବଣର ଧାରା ଝରି ପଡ଼ିବ । ଲଟି କ ଭାଦ ଯିବ ନାହିଁ । ନ ଜଠୁ ଚଙ୍ଗ ଶୋଇଥାଉ । ସୁପ୍ରୀତ କେତେ ଭଲ ଝିଅଟା—ଏମିତି ବେଳେ ବେଳେ ଚଣ୍ଡୀ ହୁଏ କାହିଁକି ?

ଅ ଟିଠୁ···ତୋ ଶୌଚକୁ ଯା ମୁଁ କରେ । ଆରେ, ଆରେ ମିଠୁ—ଏ ସମାନଙ୍କ ସାଙ୍ଗରେ ଲାଗିଗଲା କହୁଛୁ । ହେମାନ କ୍ଷୀର ଖାଆନ୍ତୁ । ଅଳ୍ପ ସମୟ ପରେ ମିଙ୍କି ଉଠିବ । ଏଁ ଏଁ ହୋଇ କାନ୍ଦିବ । ମିଠୁ କି କାନ୍ଦିବ । ଟିଠୁ ବି କାନ୍ଦିବ । ଲଟି ବି କାନ୍ଦିବ । ଗୋଟାଏ ପଖାଳ କଂସାରେ ସମସ୍ତେ ହାତ ପୂରାଇବେ । ଝଗଡ଼ା ଲାଗିବେ । ମିଠୁଟା ପିଠି ପକାଇବ । ଲଟି ରାଗ ଧରିବ ।

ଏଇକି ପଖାଳ କଂସାଟା ଯେମିତି କୁକୁରର ସ୍ତନ ଭିତରୁ ଗୋଟାଏ ଚିରସ୍ତ୍ରୀ ସ୍ତନ ! ଆହଃ···

ଅନଙ୍ଗଭୀମ·····

ଲୋକ ସଂଖ୍ୟା ବୃଦ୍ଧିର ଅନେକ କାରଣ ଭିତରୁ ସେ ଗୋଟାଏ ସଜିପୁ ପଏଣ୍ଟ ।

ସେ ଦିନର ଆଗ୍ରହ ସତ ହେଲା ।

ବଡଟା ନିଟ୍ନ ଥିଲା—ସେଥିହେଲୁ ମିଙ୍କି, ମିଠୁ, ଟିଠୁ ଓ ଲଟି ଶୋଇପଡ଼ିଥିଲେ—ଗଭୀର ନିଦରେ ।

ଅନଙ୍ଗଭୀମ କହୁଥିଲେ ଏଃ···ଏଃ···ଶୁଣୁଛ ।

'......'

'ଶୁଣୁଛ ? ଟିଠୁ ପାଖକୁ ଘୁଞ୍ଚିଆସ ।

'କାହିଁକି ଶରଧା ବୋଲୁ ହେଉଛ ଶୁଣେ ?'

'ସୁପ୍ରୀତ'

ଶଧା ସତରେ କ'ଣ ବୋଝ ପଡ଼ୁଛି । ପୁରୁଷର ଅପରିମିତ ଶରଧା ସବୁର କ'ଣ ଏମିତି ଅଗଣ୍ୟା ଅକାଳ ମୃତ୍ୟୁ ଲାଭ କରିବା ପାଇଁ ଜନ୍ମ ? ନା





Digitized by PPRACHIN, SOA

କେତେବେ ନୂଆ ହଁ— କଂକାଳର ସଙ୍ଗୀ କ'ଣ ଶରଧାର ମୃତ୍ୟୁ…ନଷ୍ଟସ୍ୱ…ନଷ୍ଟସ୍ୱ…

ଅନଙ୍ଗଭୀମ ସୁପ୍ରୀତିଙ୍କୁ ପାଖକୁ ଭିଡ଼ି ଆଣିଲେ । ଲାଇଟର ସାଇରନ୍ କାନ୍ଦଣାରେ ଅନଙ୍ଗଭୀମଙ୍କ ଶରଧା-ପଖାଳ ହାତ ଶିଥିଳ ହୋଇ ପଡ଼ିଲା ।

'ଓଃ ଉଠେଇ ଦେଲ ନାହିଁ ତୁମେ ? କ'ଣ କୁହ । ସ୍ତ୍ରୀର ଜନ୍ମ କ'ଣ କଣେଇ ହୋଇ ଖେଳିବାରେ । ନିଜକୁ ଗୁଣ୍ଡ ଅନ୍ୟକୁ ଆରାମ ଦେବାରେ । ଭଗବାନ ମୋତେ ମାରିଦିଅ । ସୁପ୍ରୀତିଙ୍କ ଅଣ୍ଟି ଯୋଡ଼ାକ ବଢ଼ିନ ଲାଗିବାରେ ଚେଷ୍ଟା, ସେଠି ସବୁ ଅଭିମାନ ପଶିଲେ ଲୁହ ହୋଇ ବାହାରି ପଡ଼ନ୍ତି । ସେୟା ତ ହେଲା । ସେ ଲୁହ ଛଳନାର ନ ଥିଲା—ଜୀବନ ପ୍ରତି, ପ୍ରେମ ପ୍ରତି, ସଂସାର ପ୍ରତି, ସ୍ୱାମୀ ପ୍ରତି, ପରିବାର ପ୍ରତି, ପିତାମାତାଙ୍କ ପ୍ରତି ଏବଂ ସନ୍ତାନ ସନ୍ତତି ପ୍ରତି ଏକ ଗଭୀର ଶୋକାତୁର ଅଭିମାନ ଥିଲା । କଣ୍ଠ ଭାରି ହୋଇ ପଡ଼ିଥିଲା ଅଥଚ ସେହି କଣ୍ଠରେ ଥିଲା ମୀରେ ବିଦ୍ରୋହର ଅନେକ ଅନୁଚ୍ଚାରିତ ଭାଷା ।

ଅବାକ୍ ହୋଇ ଚାହିଁଲେ ଅନଙ୍ଗଭୀମ । କ ଡିନାଟାଲଠ୍ ପ୍ରୟୋଗ କଲା ସେ—କଣେଇ କ'ଣ ଆରାମ ଦିଏ ? ମଣିଷ କ'ଣ କଣେଇ ହୁଏ । ସୁପ୍ରୀତି ସତ କହିଲେ । ଅନଙ୍ଗଭୀମ ସୁପ୍ରୀତିଙ୍କ ଚିକ୍କଣ ମୁହଁ ଉପରେ ହାତଟି ବୁଲାଇ ଆଣିଲେ । ଅଭିମାନ ସବୁ ଉସ୍ତୁପ୍ରସ୍ରବଣ ହୋଇ ଉଚ୍ଛୁଳି ପଡ଼ୁଥିଲା ! ସୁପ୍ରୀତିଙ୍କ ଲୁହ ପୋଛି ଅନଙ୍ଗଭୀମ କହିଲେ, 'ସୁପ୍ରୀତି ! ତମେ କିଛିଟି ଭଲ ଯୁକ୍ତି ବାଢ଼ୁଛ ଯେ ? କିଏ କ'ଣ କହିଲା । ତମକୁ ପାଖକୁ ଡ଼ାକିବାର ଅର୍ଥ କ'ଣ ସେୟା ? ଅନୁଭବ ? ସମ୍ବେଦନା, ଦୁଃଖସୁଖ ଅନ୍ୟ କିଛି ନାହିଁ । ସେମିତି ଯେ ଚରମ ବାହ୍ନିକି ପିଟିଅସ୍ ହୋଇପଡ଼ି ମୁଁ ବୁଝି ପାରୁନ ।' କଣ୍ଠରେ ତାଙ୍କର ଅନେକ ବିରକ୍ତି ଭିଡ଼ି ରହିଥିଲେ । 'ହଁ ହେଲା, ଏବେ ତ ମହାଭାରତ ବୁଝି ହେବ ଜଣ କୁହ ।'

ଅନଙ୍ଗଭୀମଙ୍କ ଛାତିରେ ମିଶି ଯାଇଥିଲେ ସୁପ୍ରୀତି ।

ଉପାପ୍ଲବରେ ସୁପ୍ରୀତିଙ୍କ ଚିକ୍କଣ ମୁହଁକୁ ଜାବୁଡ଼ି ଧରି-ଥିଲେ ଅନଙ୍ଗଭୀମ । ପୁଞ୍ଜିଭୂତ କଥାଗୁଡ଼ାଏ କହିବା ପାଇଁ ଓଠକୁ ଓଠ ଲଗାଇ ଧରିଥିଲେ ଅନଙ୍ଗଭୀମ ।

'ସୁପ୍ରୀତି'

'କ'ଣ କୁହ'

'ସୁପ୍ରୀତି'

'ଏଁ'

'ସୁପ୍ରୀତି, କଥାଟିଏ କହନ୍ତି'

'କୁହ'

'ସ୍ଥିର କରିଛୁ'

'କ'ଣ ?'

ସୁପ୍ରୀତିଙ୍କ କାନରେ ମୁହଁ ରଖି ଅନଙ୍ଗଭୀମ କହିଲେ

'ମୁଁ ଅପରେସନ୍ ହେବି ।'

'କି ଅପରେସନ୍'

'ଦାଉନ, ଆଉ ସନ୍ତାନ ହେବେ ନାହିଁ'

'ଛି ! ଛି ! ମୋ ଆଗରେ ଏ ଅଲକ୍ଷଣା କଥାଗୁଡ଼ାକ ତୁଣ୍ଡରେ ଧର ନାହିଁ ।' ଅନଙ୍ଗଭୀମ ମୁହଁ ବନ୍ଦକରି ପୁଣି ସୁପ୍ରୀତି କହିଲେ 'ଏହିଏ ମୋ ରଣ । ତମେ ଜାଣିନା । ଅପରେସନ୍ ହେଲେ ପୁରୁଷମାନଙ୍କ ବହୁତ କ୍ଷତି ହେଉଛି । ଭାରି କାମ କରିପାରୁ ନାହାନ୍ତି । ଦୃଷ୍ଟି କଳାକାଠ ହୋଇ ଯାଉଛନ୍ତି । ଖରାତରାରେ ବୁଲି ପାରୁ ନାହାନ୍ତି । ଆଉ କି ଅଲକ୍ଷଣା କଥାଗୁଡ଼ାଏ କହିବି ଯୁଆଡ଼େ ତାଙ୍କ ପୌରୁଷ ହରି ଯାଉଛି ।

'ଏ ବାଜେ କଥା କିଏ ମତେ କୋଉଠୁ ଶୁଣିଲ କହିଲ ? ଏ ସବୁ ସମ୍ପୂର୍ଣ୍ଣ ମିଛ ।'

'ହଁ, ହଁ, ସତ । ମୁଁ ଜାଣିନି କହୁଚ । ମୁଁ କ'ଣ ଶୁଣୁ ନାହିଁ କହୁଛ ? ମୋ ରାଣ ତୁମେ ସେ ସବୁ କଥା ତୁଣ୍ଡରେ ଧରନା ।'

'ଗୁଜବରେ କାନ ଦିଅନା ରାଣୀ । ପରୀକ୍ଷା କରି ନିଜେ ଦେଖ ।'

'ହଉ ଶୁଣୁଛି । ହେଲେ କାନ ହାତକୁ ବଳ ।'

'କ'ଣ କହିବ ସୁପ୍ରୀତି'



Digitized by PPRACHIN, SOA

‘ହଁ’
‘କ’ଣ କୁହ’
‘କହ ଏ’
‘ଆଁ ଏ’
‘ମୁଁ ଏଥର ସ୍ୱାପରେ ନଷ୍ଟପୁ ହେବି’
‘କ’ଣ ?’
‘ଅପରେସନ’
‘କି ଅପରେସନ୍’
‘ମାନେ ତମେ ମାହା ହୋଇଥାଆନ୍ତ’
‘ଯତେ ! ଜମା ଜମା ତୁମ କଥା କୁହନା । ସ୍ତ୍ରୀ-ମାନଙ୍କର ଅପରେସନ୍ ପରେ ବହୁତ ଦେହର ଗଣ୍ଡଗୋଳ ହେଉଛି । କୁ ଅନେକ ଅପରେସନ୍ ପରେ ଭାରି କାମ କରି ହେଉ ନାହିଁ । କିଏ ମୋଟା ହୋଇ ଯାଉଛି ତ କିଏ ଗଳିଯାଉଛି । କାହାକୁ କି ରୋଗ ହେଉଛି ତାହା ଜାଣିବା ମୁସ୍କିଲ ।
‘ମିଛ କଥା, କାହାର କ’ଣ ହୋଇଛି କୁହତ । ଆମ ସ୍ତ୍ରୀଙ୍କ କଥା ଜାଣିନୁ ତୁମେ ଜାଣି ଦେଲନା ?’
ନୀରବ ରହିଲେ ଅନଙ୍ଗଭୀମ । ତାପରେ ଜିଜ୍ଞାସୁ ହୋଇ ପଚାରିଲେ କୌଣସି ମନୁଷ୍ୟର କ’ଣ କ୍ଷତି ହୋଇଛି ଜାଣିଛ କି ?
ନିରୁତ୍ତର ରହିଲେ ସୁପ୍ରୀତି ।
ସତରେ କାହ କ’ଣ ହେଉଛି ? ସେମିତି କହି ହେଉ ନାହିଁ । ମାନସିକ ଦୁଶ୍ଚିନ୍ତା ।

‘ଏମାନଙ୍କ ଜଂଜାଳ ମୁଁ ସହି ପାରିବି ନାହିଁ । କାହାର ତ ଯତ୍ନ ଭଲଭାବରେ ନେଇପାରୁନି । କାହାକୁ ତ ଭଲ କରି ମୁଠାଏ ଦାନା ଦେଇପାରୁନି । କେମିତି ପାଠ ପଢ଼ିବେ, ବାହା ହେବେ, ଉଚ୍ଚ ଜୀବ ମଣିଷ ଭଳି ମଣିଷଟି ହୋଇ ରହିବେ । ପିଲାଙ୍କ କ୍ଷୀର ଟୋପାଏ ପିଏଇ ପାରୁ ନାହିଁ । ତମେ ଅପରେସନ୍ କରି ସାରିଥିଲେ । ଏମାନଙ୍କ ଜଂଜାଳ ତମେ ଜାଣିବ କେମିତି । ଅଣ ହାତ ଅଣ ଦେଖ, ତୁମ ସନ୍ତାନ କେମିତି ଘୂରୁଛି । ନାଁ ନାଁ ଆଉ ନୁହେଁ ।
ନାଁ ନାଁ···ଏମାନେ ଅଭଦ୍ର ହୋଇ ନ ବଞ୍ଚନ୍ତୁ ।’
‘ଥାଉ ବନ୍ଦକର ସୁପ୍ରୀତି । ଚୁପ୍ କର ।’
‘କିନ୍ତୁ ମୁଁ ଅପରେସନ୍ ହେବି ।’
‘ତୁମେ ନୁହେଁ ସୁପ୍ରୀତି, ମୁଁ ହେବି’
ତୁମେ ନୁହେଁ, ମୁଁ ହେବି !’
‘ମୁଁ ହେବି’
‘ମୁଁ ହେବି’
‘ମୁଁ ହେବି’
‘ମୁଁ ହେବି’
‘ମୁଁ କହୁଚି ମୁଁ ହେବି ।’
‘ମୁଁ କହୁଚି ମୁଁ ହେବି ।’
‘ଅବାଧ ହୁଅନା କହୁଛି ।’
‘ଅବାଧ ହୁଅନା କହୁଛି ।’
‘ତମେ ହୋଇ ପାରିବ ନାହିଁ ।’
‘ତମେ ହୋଇ ପାରିବ ନାହିଁ ।’
‘ମତେ ଶାସନ କରୁଛ ବଦମାସ୍ । କ’ଣ କହିଲ ବଜାଉ······’ ଠାଏ । ଠାଏ !
“ଦୁଇଟି ଚାପୁଡ଼ା—ଅଜାଡ଼ି ହୋଇ ପଡ଼ିଲା ସୁପ୍ରୀତିଙ୍କ ଗାଲରେ ।” ଏଇ ସେଇ ହାତ—ଯେଉଁଥିରୁ ଦୀର୍ଘ ଛ ବର୍ଷ ଧରି ସୁଧା ଝରିଥିଲା, ପ୍ରୀତି ଝରିଥିଲା, ସ୍ନେହ ଝରିଥିଲା, ଶ୍ରଦ୍ଧା ଝରିଥିଲା, ମାନ ଝରିଥିଲା, କଲ୍ୟାଣ ଝରିଥିଲା ଓ ସମବେଦନା ଝରିଥିଲା, ଶେଷରେ ଝରି ପଡ଼ିଲା ଏସବୁ !

ସୁପ୍ରୀତିଙ୍କ କଣ୍ଠରେ ଅନେକ କୋହ ! କୋହ ! କୋହ! ନିଷ୍ପ୍ରାଣ ହୋଇ ପଡ଼ିଲେ ଅନଙ୍ଗଭୀମ । ତାଙ୍କୁ ଅସହ୍ୟ ବୋଧ ହେଲା । କି ଗୁରୁତର ଅପରାଧ କଲେ ସୁପ୍ରୀତି ! ଅବାଧ ହେଲେ କେଉଁଥି ପାଇଁ ? ମୁହଁରେ ଜବାବ ଦେଲେ କେଉଁଥି ପାଇଁ ? ଯେଉଁ ହାତ ପ୍ରୀତିଦିଏ ସେ ହାତ ଏମିତି ଅପ୍ରୀତି କରାଏ କେମିତି ? ଅନଙ୍ଗଭୀମଙ୍କ ହାତ ଥରୁଥିଲା—ଯେମିତି ଅବା ସମ-ବେଦନା ଜଣାଇବା ପାଇଁ ।
ତାଙ୍କ ଓଠ ଥରୁଥିଲା କ୍ଷମା ଭିକ୍ଷା ପାଇଁ ।



Digitized by PPRACHIN, SOA

ସୁପ୍ରୀତଙ୍କ ସଜଳ ମୁହଁଟିକୁ ଟେକି ଧରିଥିଲେ ଅନଙ୍ଗଭୀମ । ଯେଉଁ ହାତ ମାରିଥିଲା, ସେ ହାତ ସମବେଦନା ଜଣାଇଥିଲା । ଯେଉଁ ଆଖି ନିର୍ଜଳ ଥିଲା ତାହା ସଜଳ ହୋଇଥିଲା ।

ସୁପ୍ରୀତଙ୍କର ତ ଏତୁର ବୋଧ ଓ ଜ୍ଞାନ ନାହିଁ । ପରିବାରର ମଙ୍ଗଳ ପାଇଁ ସେ କେତେ ଗମ୍ଭୀରଭାବେ ଚିନ୍ତା କରି ନାହାନ୍ତି ସତରେ ? କିନ୍ତୁ ଅନଙ୍ଗଭୀମ ନିରୁତ୍ତର ରହିଛନ୍ତି । ସବୁ ଅମଙ୍ଗଳ—ଷଡ଼ଯନ୍ତ୍ରକ—ଉଭୟଙ୍କ ମସ୍ତକରେ ଭୂତ ଚଢ଼ିଛି । ଦେବତାର ଫୁଲ ଭାବି ସେମାନେ ସନ୍ତୁଷ୍ଟ ରହିଛନ୍ତି । ସେ ସନ୍ତୋଷରୁ ମିଳିବ ବା କ'ଣ ? ସନ୍ତୋଷକୁ ସମସ୍ତ ଅସନ୍ତୋଷ କରିଦେବ । ଚୁ ଚୁ ନଥାଇ ଜଳିବ—ଅଭାବର, ଦାରିଦ୍ର୍ୟର, ଅସହାୟତାର, ସ୍ନେହ ପ୍ରୀତି ଦୁର୍ବଳତାର ସେତେବେଳେ କ'ଣ ହେବ କୁହ ତ ?

ଅନଙ୍ଗଭୀମ ସୁପ୍ରୀତଙ୍କ ଟିକି ମୁହଁଟିକୁ ଖୁବ୍ ଜୋରରେ ଛାତିରେ ଭିଡ଼ି ଧରିଲେ । କୋହରେ ଫାଟି ପଡ଼ିଲେ ସୁପ୍ରୀତ ।

'ତମ ଆଦରର ସୁପ୍ରୀତି ପ୍ରତି ତମେ ହାତ ଉଠାଇ ପାରିଲ କେମିତି ? ନାଥ ଟେକ ଟିପି ମାରିଦେଲ ।

କିନ୍ତୁ ସୁପ୍ରୀତଙ୍କ ଯଦି କିଛି ହୋଇଯାଏ ମାନେ କିଛି ଗୁରୁତର ତେବେ ଅନଙ୍ଗଭୀମ ସହି ପାରିବେ ତ ?

ହଂସଯୋଡ଼ା ଭିତରୁ ଗୋଟାଏ କେହି ଜଖମ କିନ୍ତୁ ଅନଙ୍ଗଭୀମଙ୍କ ଯଦି କିଛି ହୋଇଯାଏ ମାନେ ସେହିଭଳି ଗୁରୁତର ଅପରାଧ ସୁପ୍ରୀତ ସହି ପାରିବେ ତ? ହୋଇଥିଲେ ଆଉ ହଂସଟି ଝୁରି ରହିବ ତ ? ନା ନିଜ ଖେଳି ପାରିବନି । ସୁନ୍ଦର ସହି ପାରିବେନି । ସହାନୁଭୂତି । ତଥାପି ଏକ କମନୀୟ ଶୁଭେଚ୍ଛା ଉଭୟଙ୍କର ଉଭୟ ପ୍ରତି । ହସି ଖେଳି ବଞ୍ଚି ରହନ୍ତୁ ସମସ୍ତେ···ସର୍ବେ ଭବନ୍ତୁ ସୁଖୀନଃ······ ସର୍ବେ ସନ୍ତୁ ନିରାମୟାଃ ·····ସହନାବବତୁ······ ସହନୌଭୁନକ୍ତୁ······କେହି କାହା ନାହିଁ ରହିବ ନାହିଁ ଏ ଭବରଙ୍ଗ ଭୂମିରେ । ସୁପ୍ରୀତ ତମେ ମହାନ ! ଅନଙ୍ଗଭୀମ ତମେ ବି ମହାନ ।

ଲିଟି କିଛି ନାହିଁ ଲୋ, ଆଜି ଶୋଷ ନା ।

ମିଛଟି ରୁ କାନ୍ଦନା ଲୋ, ଆଉ ମାସକେ ତୋ ଫ୍ରକ୍ କିଣିଦିବ ।

ମିଛଟ ରୁ ଅଝଟ ହୋନା କହୁଛି, ସେ ଖୀର ଲିଟି ପିଇବ ।

ଆଃ ଲିଟି ତୋ ସାନଭାଇ ପାଇଁ ବିଗିଡୁଛୁ କ'ଣ !

ଝିଅ କି ଭଉଣୀ କିଏ ଜାଣେ । କିନ୍ତୁ ସମ୍ପୂର୍ଣ୍ଣ କୋଣାର୍କ ଗଢ଼ିଉଠିଛି । ଉଦ୍‌ଘାଟିତ ହେବ । କିଏ ଆସିବ କେଜାଣି ? ଟିକି, ଲିଟି, ପିଟି, ଝିଟି ? ଆସୁ । ତଥାଗତ······ଅକ୍ରୁହା ଅପୂର୍ଣ୍ଣ ଅସ୍ପୃଷ୍ଟ ସେହି ମିତି ଚାଲିଯିବ ଯେ କିନ୍ତୁ ଦଣ୍ଡଗଞ୍ଜ କରିଯିବ ସମସ୍ତଙ୍କୁ । ଗତ ମାଡ ଅସୁଥିଲା ଅଫିମ ନିଶାଖାଇ ।

ସବୁଦିନ ଭଳି ଝଗଡ଼ା ପଡ଼ିଥିଲେ ଅନଙ୍ଗଭୀମ ଓ ସୁପ୍ରୀତ ।



ଜାଣିଛନ୍ତି ନା ?

ପୁଅଟିଏ ହେଲା । ତାକୁ କିଟି ବୋଲି ଡାକିଲେଣି । ଧୋବଫୁଲିଆ ପିଲାଟି କେଇଖଣ୍ଡି ହାଡ଼ ନେଇ କଷ୍ଟରେ ହସଟିଏ ହସୁଛି । ପାଞ୍ଚ ଦଶ ମିନିଟରେ ହାତ ଗୋଡ଼ ହଲାଉଛି । ଏହି ଗୁଣମଣି ପଞ୍ଚମ ସନ୍ତାନ । ସୁପ୍ରୀତଙ୍କୁ ଦେଖିଛନ୍ତି ?

ଟୁଃ···ଟୁଃ···ଛାତି ଏମିତି ଫାଟି ଯାଇଛି । ହାଡ଼ର ଥାଟ ଏମିତି ସୁନ୍ଦରୀ ସ୍ତ୍ରୀଟିକୁ ମୋଟେ ଅନେଇ ହେଉନି—ଆଖି ବରଂ ପୋଡ଼ି ଯାଉ,

ଯତ୍ନ ଅଭାବରେ ଜିନିଷଗୁଡ଼ାକ କି କଦର୍ଯ୍ୟ ଦିଶେ । ଆଉ ହଁ ଏଇ ଅନଙ୍ଗଭୀମବାବୁମ ! ଆଜିକାଲି ସବୁବେଳେ ଅନ୍ୟମନସ୍କ ରହୁଛନ୍ତି । ସିଗାରେଟଟିଏ ଟାଣି ପାରୁ ନାହାନ୍ତି ସେ । ନୂଆ ଚୋଟିଏ ପକାଇ ପାରୁନାହିଁ । ପୁରୁଣା ଡେପଟେ ଛଅଟି ଷ୍ଟୋର ପଡ଼ିଛି । ତାଙ୍କର ଗହନ ଚିନ୍ତାଗତ କଥା ଜାଣିଛନ୍ତି ? ବୋଧହୁଏ ନା ।



Digitized by PPRACHIN, SOA

ଘୁଅଁ ଅସନ୍ତୁ କହୁଛନ୍ତି···ଖାଲି ଚଡ଼ ଚଡ଼ ହେଉଛନ୍ତି । କେତେବେଳେ ଚୁପ ଚୁପ୍ କାବୋଧ ଭଳି ଚୁପ୍ ଚୁପ୍ ବସୁଛନ୍ତି । ହଁ ସେ ଏଣିକି ଶତମତ ଅଲଗା ଶୋଉ-ଛନ୍ତି । ରାତିରେ ଗୁଡିପିଡି ହେଉଛନ୍ତି । ତାଙ୍କୁ ବହୁତ ଖାଲି ଖାଲି ଲାଗୁଛି, ଅଭ୍ୟାସ କରୁଛନ୍ତି ଅଉ ଜମା ସେ ପିଇବେନି···ନାଁ । ଜମା ନୁହେଁ ।

ଝଷ୍ଟ ଅସିପିବ । ତାପରେ ସପ୍ତମ, ଅଷ୍ଟମ, ନବମ, ଦଶମ, ଏକାଦଶ, ଦ୍ୱାଦଶ···ଏମିତି ବ ଅନ୍ତୁର ଅଧିକ ଅସି ପାରନ୍ତି । ଅପଣ ଜାଣିବେ ଅନଙ୍ଗଭୀମ ଥିଲେ ତାଙ୍କ ମା'ର ଏକାଦଶ ସନ୍ତାନ, କିନ୍ତୁ ଏବେ ପୁଅ-ବେଳକୁ ପକ୍ଷପାତିତା କାହିଁକି !

ହଁ ! ସେତେବେଳେ କଥା ଦୁଇ ପୁରୁଷର କିନ୍ତୁ ଗହନ । ସେ ପୁରୁଷରେ ଟଙ୍କାକୁ ଟାନ ୩୨ ଗୌଣୀଥିଲା । ଏ ପୁରୁଷରେ ୧ କେଜି ଚାଉଳକୁ ୨ ଟଙ୍କା । ଅନଙ୍ଗଭୀମଙ୍କ ମା ଓ ସ୍ତ୍ରୀ ସେ ପୁରୁଷ ଏ ପୁରୁଷର ଦୁଇଟି ନମୁନା ମଡେଲ ।

ଅନଙ୍ଗଭୀମଙ୍କ ମା ଧାନ ଅମାର ଦେଖୁଥିଲେ ରୁପା ଟଙ୍କା ଦେଖୁଥିଲେ ଘଷିଫଟା ଭଳି ପିଠା ଖାଉଥିଲେ । ଦୁଅ ଘିଅରେ ଭାସୁଥିଲେ । ଅନଙ୍ଗଭୀମଙ୍କ ସ୍ତ୍ରୀଙ୍କୁ ଆପଣଙ୍କ ସ୍ମୃତିଁ ଦେଖିପାରନ୍ତି ।

ଚୁପ୍ ରହନ୍ତୁ ପ୍ରିଜ୍ ।

ସେତେବେଳେ ବାରତୀର୍ଥ ଦେଖି ଯିବା ଅସିବା ହେଉଥିଲା । ଅଥଚ ଅନଙ୍ଗଭୀମଙ୍କ ମାଙ୍କର ଏଗାରଟି ସନ୍ତାନ ହୋଇଥିଲେ । ଏବେ ନିଜକୁ ପଗ୍ଭରନ୍ତୁ ତ । ସବୁ ବିଶୃଙ୍ଖଳା ଅପଣମାନେ କରୁଛନ୍ତି । ହେଉ ଦେଖନ୍ତୁ ଏମାନେ କ'ଣ କରୁଛନ୍ତି—

'କ'ଣ ନିଦ ଲାଗୁ ନାହିଁ କି ?'

'ଉଁ'

'ରାତି ବହୁତ ହେଲାଣି ଶୁଭୁଛି ନା ?'

'ଅଁ ଏ'

'ଗୁଡି ପିଡି ହେଉଛ ଯେ ।'

'ଓଡ଼ଣ ମଣା'

'ଏ ଘରକୁ ଅସ'

'ନାଁ ।'

'ଅସ'

'କାହିଁକି ?'

'......'

'କାହିଁକି ଶୁଣେ'

'......'

'ହଉ ହେଲା, ଆସିଲି କଣ କୁହ ?'

ଏଇ ସ୍ନେହଧୂଆ କେତୋଟି ଶବ୍ଦ ଝରିପଡ଼ିଲା ଅନଙ୍ଗ-ଭୀମଙ୍କ କଣ୍ଠରୁ । ଅଦେଶ ହେଲା—

'ଏଠି ଶୁଅ'

'କଣ କୁହନା'

'ତୁମକୁ ଠିକେ ଘଷିଦେଇ ପାରୁ ନାହିଁ । ବଳ ପାଉ ନାହିଁ । ଶୁଅ ।'

......

'ଓଃ ତୁମ ହାତ ଭାରି କାଟୁଛି । ଥାଉ ଥାଉ···'

'ପରିହାସ କରୁଛ ।'

'ନା ସତରେ'

'ସେ କିଏ ଜାଣିଲଣି ?'

'କ'ଣ'

'ଆରମ୍ଭ ହେଲାଣି'

'ହାଁ ଏ, କେବେଠୁଁ ?'

'କେତେଦିନ ହେଲାଣି'

'ପୁଷ୍ପବତୀ'

'ଏଃ ଚାରିମାସ ହେଲା କେମିତି ଏକା ଏକା ଖଣ୍ଡାଉଛ ଯେ ?'

'ଭଗବାନଙ୍କୁ ଜଣା'

'କେତେ ଶୁଖିଗଲଣି'

'ତମକୁ ଅନେଇ ହେଉ ନାହିଁ ସୁପ୍ରୀତି ।'

'ଶୁଅ'

'ତୁମେ ମୋ ଛାତି ଉପରେ ଟିକେ ଶୁଅ'

'ଏମିତି ଥରୁଛ କାହିଁକି ?'

'ଭିପୂଟରେ'
'କି ଭସ୍ମ'
'ନା ତମେ ମୋ ଛାତି ଉପରୁ ଉଠିଯାଅ ।'
ଶୁନ୍‌ଶାନ୍‌···ଥରୁଛନ୍ତି ଅନଙ୍ଗଭୀମ ନର୍ଭସ୍ ହୋଇ···
ନସହାପ୍ସ ମୂର୍ଣ୍ଣାଢାଠଟି ଭଲ ସେ କଡ଼କୁ ଗୃହିଁ
ଶୋଇଛନ୍ତି ସୁପ୍ରୀତି···
'ସୁପ୍ରୀତି···ଏଃ···ଅଭିମାନ ଭଲ୍ ।'
'ଅଁ ଏ'
'ଶୋଇ ପଡ଼ିଲ କି ?'
'ବହୁତ ନିଦ ଲାଗୁଛି ।'
'ଶୁଅ···ଶୁଅ···ହେଃ ମତେ ନିଦ ଲାଗୁନାହିଁ ।
ଶୁଣୁଛ ?'
'କ'ଣ'
'ମୋ ଛାତି ଉପରେ ଟିକେ ଶୁଅ ସୁପ୍ରୀତି'
'ପ୍ଲାନ୍ ?'
'ନାଁ ।'
'ତେବେ'
'ସ୍ମୃତି ସ୍ମରଣେ'
'ଓଃ'
'ହଁ'
'ଧେତ୍'
'ନିଷିଦ୍ଧ ଫଳ ଖାଇବ ।'
'ଛି···'
'ନାଁ ।···ଏମିତି ହୁଅନା'
'ତମେ ଥରୁଛ ଯେ'
'ଭୟରେ'
'କି ଭୟ'
'ତମର ସେଇଁଭୟ'
'ଅଭୟ ଦେଉଛି'
'ସବୁଥର ଦେଉଥିଲ'
'ହେଲା କ'ଣ'
'ହବା କଥା'
'ତା ପରେ'

'ଏସ୍ଥା'
'ଅଭୟ ଦେଉଛି ।'
'ନାଁ ।'
'ପ୍ଲିଜ୍ ଶୁଣ'
'ମାଲ୍ଲୋ ମଲ୍ଲୀଷୀରକୋଳି ଖାଇ ପେଟରେ ହେଲି ।
ନା ବାବା ନା ।'
'ଜଳାଅ ନା'
'ଜଳନା'
'ଜଳିଲେ'
'ଏକାକୀ'
'ଏକାକୀ ନୁହେଁ ସାଥେ ଥିଲ ସଖୀ'
'ନାଁ ।'···'ହଁ'···'ନା'···'ହୁଁ'···
'ଖାଇଲ ?'
'......'
'ଏ ଖାଇଲ ? ବୋଲି ପଚାରିଲ ପା···କେମିତି ଲାଗିଲା ?'
'......'
'ଚୁପ୍ ରହିଲ ଯେ ? କେମିତି ଲାଗିଲା ?'
'ବାଜେ'
'ହସୁଛ । ଶୁଣ ?'
'ଶୋଇପଡ଼'
'ଆଗ ଭଲଟା'
'ଆଗଠୁଁ ଭଲ'
'ମୋଗଣ ମୋ ଦେହ ଛୁଇଁଲ ?'
'ଏମିତି ତ କେବେ ପଚାରନା କଥା କ'ଣ ?'
'ଅସୁବିଧା ହେଲାକି ?'
'କି ଅସୁବିଧା'
'ମାନେ କୌଣସି ଦୁର୍ବଳ ପୌରୁଷର ପରିଚୟ ?'
'ମୋର ଦୁର୍ବଳତାକୁ ତମେ ପରିହାସ କରୁଛ ।'
ଅଏଁ, ତମ ଆଖିରେ ଲୁହ । ସୁନାଟ ପା କ'ଣ
ହୋଇଛି କୁହ । ମୋ ଗୁଣ ତୁମେ କ'ଣ ଅସନ୍ତୁଷ୍ଟ ?''
'କୁହ ନପା ଗୁଣ ତୁମେ କ'ଣ ଅସନ୍ତୁଷ୍ଟ ।'
'ତୁମ ଆଖିରେ ଲୁହ'
'ତୁମ ଆଖିରେ ଲୁହ'


Digitized by PPRACHIN, SOA

'ମତେ କ୍ଷମାଦଅ'
'ମତେ କ୍ଷମାଦଅ'
'କି ଦୋଷ କଲି ?'
'କି ଦୋଷ କଲି ?'
'ଲଜ୍ଜିତ'
'ଲଜ୍ଜିତ'
'କ'ଣ ?'
'କ'ଣ ?'
'ତୁମକୁ ବୁଝିବା ମୁସ୍କିଲ'
'ତୁମକୁ ବୁଝିବା ମୁସ୍କିଲ'
'କଣ କହୁଛ'?
'ତମେ ଯାହା କହୁଛ ?'
'ଲଚେଇଛ'
'ତୁମେ ଯାହା ଲଚେଇଛ'
'କ'ଣ ମୁଁ ଲଗୁଇଛି'
'ପୌରୁଷ କଥା'
'ନା କିଛି ନୁହେଁ'
'ହୁଁ ସବୁ କିଛି ।'
'ମୁଁ ବିଷ ଖାଇଦେବି'
'ମୁଁ ଆତ୍ମହତ୍ୟା କରିବି'
'ତମେ ମୋ କଥା ମାନିଲ ନାହିଁ ।'
'ତମେ ମୋ କଥା ମାନିଲ ନାହିଁ ।'
'ହେ଼ ଭଗବାନ···'
'ହେ଼ ଭଗବାନ'
'ମାନେ ତମେ ଅପରେସନ୍ ହୋଇଛ'
'ମାନେ ତମେ ନିଜ କଥା କହୁଛ ।'
'ତମେ ବି ହୋଇଛ'
'ତମେ ବି ହୋଇଛି'
'ସଂଦେହ'
'ସଂଶୟ'
'ସତ କୁହ'
'ମିଛ କହୁନି'
'ସତ କୁହ'
'ମିଛ କହୁନି'
'ସତ କୁହ'
'ମିଛ କହୁନି'
'ହାଏ !'
'ହାଏ !'
'ବଦମାସ ବଜାରୁ ।'
ଠାଏ ! ଠାଏ !
ସେହି ହାତ ! ଯେ ପ୍ରେମ ଦିଏ, ସେ ପ୍ରହାର ଦେଲା ।
ଅନଙ୍ଗଭୀମ ଥରୁଥିଲେ ।
'ମୋ ଦେବଶଚୀ ମାରିଦିଅ ! ମତେ ବିଷ ଦିଅ ।
ମୁଁ ବଞ୍ଚିବାକୁ ଚାହୁଁନି ।'
'ହିଁ······ହିଁ······ଟୁର୍‌ରେ ଯାଇ ଅପରେସନ୍
ହୋଇଛି ।'
'ମୁଁ କହିବି ଜନ୍ମ ପରେ ଅପରେସନ ହୋଇଛି ।'
'କାହିଁକି ଲଚେଇଲ ?'
'କାହିଁକି ଲଚେଇଲ ?'
'ସୁଖୀ ପରିବାରଟିଏ ପାଇଁ'
'ସୁଖୀ ପରିବାରଟିଏ ପାଇଁ ।'
'ମତେ ଥରଟିଏ ପଚାରିଲ ନାହିଁ ?'
'ମତେ ଥରଟିଏ ପଚାରିଲ ନାହିଁ ?'
'ମୁଁ ତମର କେହି ନୁହେଁ ?'
'ମୁଁ ତମର କେହି ନୁହେଁ ?'
'ସୁପ୍ରୀତି ତମେ ମହାନ୍ ।'
'ତମେ ଆକାଶ ।'
'କ୍ଷମା ଦିଅ'
'କ୍ଷମା ଦିଅ'

ଚୁପ୍‌ରେହି ଆଖିରୁ କେତେ ଲୁହ ଝରିଲା କେଜାଣି ଗୋଟାଏ ସମୁଦ୍ର ହୋଇଗଲା । ତା'ପରେ ହସ······କରି କରି ହସ—କୁରୁକୁରୁ ହସ······ ଚପା ଚପା ହସ······ଉଚ୍ଛୁଳା ହସ ଗୁଡ଼ାକ ଏତେ ସୃଷ୍ଟି ହେଲା ଯେ ସେସବୁ କିସମ କିସମ ଫୁଲ



Digitized by PPRACHIN, SOA

ତହାଁଇ ଦେହ ସମୁଦ୍ରରେ ଭାସିଲେ ଯଥା ! ହଠାତ୍ ଏ ଭଉଁରୀ ଭିତରୁ ଅନଙ୍ଗଭୀମଙ୍କ ମୁହଁଟି ଭସି ଉଠି ଏଡ଼େ କାଳଠା ଖୋବ ଆଉ ଗୋଟିଏ ଭଉଁରୀରେ ଭସି ଉଠିଥିବା ସୁପ୍ରୀତିଙ୍କ ମୁହଁକୁ ଚାହିଁ ହଠାତ୍ ପଚ୍ଛୁରୁଥିଲେ 'ଆଜ ଥରେ କାଷିଛ ଫଳଟିଏ ମିଳନ୍ତାକି?' ଅରେ ଯାଃ······ସେମାନେ ବୁଡ଼ିଗଲେ । ହଜିଗଲେ । ଛୁ ଛୁ······

ଶ୍ରୀ ଯଜ୍ଞଦତ୍ତ ଆର୍ଯ୍ୟ
ଜୟପୁର


# WIDE RANGE OF SERVICES FOR SMALL ENTREPRENEURS

★ Construction and maintenance of Industrial Estate sheds, supply of machinery under Hire Purchase system and controlled raw materials, Margin Money for Bank loans and Bridge Finance for short term requirements along with internal marketing assistance for the products.

★ Provision of identified feasible industrial schemes with special assistance for establishment of new Chemical Industries and other special category of small industries in Orissa.

★ Opportunity for training in entrepreneurship and other ancillary services to entrepreneurs for management.

★ Assistance in the export of Handicrafts Handlooms and other small industries products.

We also manufacture—

i) Television
ii) Cutting Tools
iii) Wooden & Steel Furniture
iv) Light Engineering Goods

OSIC—IS AT YOUR SERVICE

We invite small entrepreneurs to contact us:

## ORISSA SMALL INDUSTRIES CORPORATION LTD (OSIC)

(A Government of Orissa Undertaking.)
BARABATI STADIUM, CUTTACK-753005

Phone: 20818 Telex: 025-226 Gram: "UDYOG".




Digitized by PPRACHIN, SOA

# ତାଳ ବେତାଳ

"ସନ୍ଥ ଭୁକାରାମ ନାଁ ଶୁଣିଛନ୍ତି ।"

ତାଙ୍କ ବକ୍ଷସ୍ଥଳରେ ଘଟଣାଟିଏ କହୁଛି ଶୁଣନ୍ତୁ । ଦିନେ ଭୁକାରାମ ଫେରୁଥିଲେ କଣ୍ଟା ଅଖୁଗଛ ଧରି ହାଟରୁ । ବାଟରେ କେହି ଭିକ୍ଷୁମାଗିବାରୁ ସେ ସମସ୍ତଙ୍କୁ ଅକୁଣ୍ଠିତ ଚିତ୍ତରେ ବାଣ୍ଟି ଦେଲେ । ଘରକୁ ଫେରିଲା ବେଳକୁ ହାତରେ ଥିଲା ଖଣ୍ଡିଏ ମାତ୍ର ଆଖୁ । ତାଙ୍କର ଘରଣୀ ସ୍ୱାମୀଙ୍କ ହାତରେ ଖଣ୍ଡିଏ ଆଖୁ ଦେଖି ରାଗରେ ଜଳିଉଠିଲେ ଏବଂ ସେହି ଅଖୁ ଖଣ୍ଡିକୁ ଓଟାରି ଆଣି ତାଙ୍କ ସ୍ୱାମୀଙ୍କ ମୁଣ୍ଡରେ ଏଭଳି ଶକ୍ତ ପ୍ରହାର ଲଗାଇଲେ ଯାହାଫଳରେ ଆଖୁଟିଭାଙ୍ଗି ଦୁଇଖଣ୍ଡ ହୋଇଗଲା । କିନ୍ତୁ ସନ୍ଥମଣି ଭୁକାରାମ ବିବ୍ରତ ନ ହୋଇ ତାଙ୍କ ସ୍ତ୍ରୀଙ୍କୁ ବିନମ୍ର ସହକାରେ କହିଲେ "ତୁମେ କାହିଁକି ଅଯଥାରେ ଏତେ କଷ୍ଟ କଲ — ନିଶ୍ଚୟ ତୁମ ହାତକୁ ବାଧା ହୋଇଥିବ । ମନେ ହେଉଥିଲେ ମୁଁ ନିଜେ ଅଖୁଟିକୁ ଦୁହକରେ ଭାଙ୍ଗି ଦେଇଥାନ୍ତି ଏବଂ ଆମେ ଦୁହେଁ ଖୁସିରେ ଖାଇ- ପାରିଥାନ୍ତେ ।" କି ଉଦାରତା—କି ମହାନୁଭବତା — ଏହି ଘଟଣାକୁ ଉପେକ୍ଷା କରି କେତେଜଣ ଏପରି କହିପାରନ୍ତି ? ପ୍ରକୃତରେ ସେମାନେହିଁ ମହାପୁରୁଷ — ସେମାନେହିଁ ଜିତେନ୍ଦ୍ରିୟ, ଯୋଗଜନ୍ମା । ଲୁହ ଜର ଜର ଆଖିରେ ଭକ୍ତପ୍ରବଣତାର ଶୀର୍ଷ ସୀମାରେ ପହଞ୍ଚି ସେ ଦିନ ବଖ୍ୟାନ କରୁଥିଲେ ବନ୍ଧୁ ମୁରାରି ମୋହନ ।

ମୁରାରିବାବୁଙ୍କ ସହିତ ମୋର ପରିଚୟ ବହୁ ଦିନରୁ । ସମ ଗୃହର ଗ୍ଲାଡ଼ି ନ ପେଟପୋଷିବା ପାଇଁ କଣ୍ଡ ଦୋକାନଟିଏ ଖୋଲିଲ ବସିବା ପରେ ମୋର ଅନ୍ତରଙ୍ଗତାର ପରିମାଣ ସୀମା ଅତିକ୍ରମ କରିଯାଇଥିଲା । ତାଙ୍କର ସେହି ଷ୍ଟୁଡ଼ିଓରେ ଲମ୍ବା ଚୌକିଟା ଘର ଭିତରେ ଅନେକ ଗପିଛୁ ଅନନ୍ତ କାହାଣୀ— କେତେବେଳେ ସନ୍ଥମାନଙ୍କ ସହିତ ଅବା ଅନ୍ୟ କେବେ ଭଲେ ଆମେ ଦୁଇଜଣ ପରସ୍ପରର ବନ୍ଧୁ- ଭାବରେ ପୁଣି ଆଦର୍ଶ ବିରୋଧୀ ଶତ୍ରୁ ହିସାବରେ । ଏଥିରୁ କୌଣସି ଚିହ୍ନବର୍ଣ୍ଣ ନାହିଁ । ସମସ୍ତ ଜଡ଼ ଭଲଭାବରେ ଏଗୁଡ଼ିକୁ ଗୃହି ନେଇଛନ୍ତି ।

କିନ୍ତୁ ମୁରାରିବାବୁଙ୍କର ସେହି ଭାବ ଗଦଗଦ୍ ସ୍ୱର ଅବିସ୍ମରଣୀୟ । ଚଳଚିତ୍ରରେ ସନ୍ଥଭୁକାରାମଙ୍କୁ ଦେଖି ଦେଖି ସେ ଏପରି ଅଭିଭୂତ ହୋଇଗଲେ ଯେ ସେହି ସିନେମାହଲ୍‌ରେ ଛାଡ଼ିଦେଇ ଆସିଥିଲେ ପୁରୁଣା ମୁରାରିମୋହନଙ୍କୁ ଏବଂ ନେଇ ଆସିଲେ ନୂଆ ମୋହନମୁରାରୀଙ୍କୁ ସୁନ୍ଦରର ପରିବର୍ତ୍ତିତ ସଂସ୍କରଣ ଭଳି ।

ମୁଁ ବି ଦେଖିଥିଲି ସେହି ଫିଲ୍ମକୁ—ଅବଶ୍ୟ ଅନ୍ୟମନ । କାହିଁ ମୋ ଭାବରେ ତ କିଛି ପରିବର୍ତ୍ତନ ହୋଇନଥିଲା । ତାଙ୍କର ଭାବବିହ୍ୱଳ କଥା ଶୁଣିସାରିଲା ପରେ ମୁଁ ଲକ୍ଷ୍ୟ କରିଆସିଛି ମୁରାରିବାବୁଙ୍କୁ ଅତି ନିବିଡ଼ ଭାବରେ ।

କିଛିଦିନ ପରେ ତାଙ୍କ ରୁମ୍‌ରେ ଶୋଭା ପାଇଲା ସନ୍ଥ ଭୁକାରାମଙ୍କର କାଚ ବନ୍ଧେଇ ଫଟୋଟିଏ । ସନ୍ଧ୍ୟା ସକାଳେ ଧୂପକାଠିର ନୈବେଦ୍ୟରେ ପୁରି ଉଠିଲା ବାୟୁମଣ୍ଡଳ । ଫୋଲ୍‌ଡ଼ିଦିଆ ପୁରୁଣା ପେଣ୍ଟ ବଦଳରେ ସେ ପିନ୍ଧିଲେ ହ୍ୟାଣ୍ଡଲୁମ୍‌ର ଧୋତି । ତାହା ଉପରେ ଝୁଲିପଡ଼ିଲା ଖଦୀର ଫର ଫର ଚଦର । ସଜ୍ଜିତ ରହିଲା ମଣିଷାର । କିଣାହେଲା ଏକତାରା । ସଂଗ୍ରହ ହେଲା ଭଜନାବଳୀ । ମୁଣ୍ଡ ପଛରେ ଝୁଲି- ପଡ଼ିଲା ନାତିଦୀର୍ଘ ଚୁଟି ପୁଞ୍ଜାଏ—ତାର ଶୀର୍ଷରେ ଗୋଟାଏ ତୁଳସୀପତ୍ର ବା ଫୁଲମିଶା ଗୋଟାଏ ଗ୍ରନ୍ଥି — ସଦ୍‌ଚିନ୍ତାକୁ ଜୋରକରି ଅଦ୍ଧୃତ କରିବା ପାଇଁ ଏହା ଥିଲେ ଭାରତୀୟଙ୍କର ନୂତନ ଗବେଷଣା । ରାତିର ନିଶୂନ ପହରରେ ଏକତାରା ଉପରେ ଗୁଞ୍ଜିଲା ଘନ ଘନ ଝଙ୍କାର । ଓଃ ! କି ଅସହ୍ୟ ସେ ସ୍ୱରସାଧନା । ଭଜନାବଳୀର ଶବ୍ଦ ଝୁଂଟନ ଏବଂ



Digitized by PPRACHIN, SOA

ଏକତାରାର ସ୍ୱରତରଙ୍ଗ ସେତେବେଳେ ଗୁଞ୍ଜରିଲା ଭଳି ଶୁଭେ—ପରସ୍ପରକୁ ଡାକୁଥିବା ପକ୍ଷୀଯୋଡ଼ି ଭଳି । କୁଆଡ଼େ ଗଲା ଗଜଗାମୀର ସ୍ପୃଷ୍ଟ ବିଭୁତି—କୁଆଡ଼େ ଗଲା ବ୍ୟୁରୋକ୍ରାଟସ୍‌ମାନଙ୍କର ଶାସନ ଧାରାର ଜ୍ୱାଳାମୟୀ ନିନାଦ—କୁଆଡ଼େ ଗଲା ଅଧୁନିକ ସାହିତ୍ୟିକର ଅନ୍ଧାରୀ ଭବିଷ୍ୟତର କଳ୍ପନା— ମୁଁ ପ୍ରକୃତରେ ଅସ୍ଥିର ହେଲି ଏହି ନବତମ ମୋହନ ମୁରଲିଙ୍କୁ ଦେଖି ।

ତାଙ୍କର ରୂପବିନ୍ୟାସ ତଥା ଚଳଣିବର୍ଣ୍ଣନକୁ ମୁଁ କହି ସମାଲୋଚନା କରିଛି । କିନ୍ତୁ ତାଙ୍କର ଅତୀତକୁ ଅନୁଧ୍ୟାନ କରିବାକୁ ବହୁ ଅନ୍ତରଙ୍ଗତା ପ୍ରକାଶ କରିଛି ମଧ୍ୟ ।

ମୁଁ ଜାଣେ ମୁରଲୀବାବୁ ଉଚ୍ଚକୋଟି ସନ୍ତାନର ଜନକହୋଇ ସୁଦ୍ଧା ଘରେ ସନ୍ତୁଷ୍ଟ ତାଙ୍କର ଅର୍ଥର ଅନଟନ ନୁହେଁ । ସ୍ତ୍ରୀ ରହନ୍ତି ପିଲାମାନଙ୍କ ସହିତ ଭିନ୍ନ ସ୍ଥାନରେ ତ ଗ୍ରାମରେ ରହନ୍ତି ବୃଦ୍ଧ ପିତା-ମାତା । ଘରର ଆର୍ଥିକ ଅବସ୍ଥା ଅଭାବଜନକ । ପୁଣି ମୁରଲୀବାବୁଙ୍କ ସ୍ୱାଧୀନଚେତା ମନ ତାଙ୍କୁ ଆଣି ଅବସ୍ଥାପିତ କରିଛି ବହିର୍ଦ୍ୱାରୀ ଭାବରେ । ଏହିଭଳି ପରିବେଷ୍ଟନୀରେ ତାଙ୍କର ଜୀବନଯାପନ ପ୍ରଣାଳୀ ମନେ ହୁଏ ପୁରାଣର ତ୍ରିଶଙ୍କୁ ଭଳି । ପାରିବାରିକ ବିଷୟ ଉତ୍ଥାପନ କଲେ ହେଁ ମୁରଲୀବାବୁଙ୍କୁ ପତ୍ନୀଙ୍କ ଖବର ପଚାରିଲେ ସେ ତାଙ୍କର ଧର୍ମ ପତ୍ନୀଙ୍କର ରଣଚଣ୍ଡୀ ରୂପକୁ ସରଳଭାବରେ ବିସ୍ତାରିତ କରି ଏବଂ ସହସ୍ର ପ୍ରଣାମ ଜଣାଇ କହନ୍ତି "—ତାଙ୍କ କଥା କହନା । ସେ ମୋର ସ୍ୱାମୀ—ଏବଂ ମୁଁ ତାଙ୍କର ସେଇ ଏକନିଷ୍ଠ—ସବୁ ଉଚ୍ଚାବଚ ହେଲେ ସେ ଅନୁଗାମିନୀ ନାରୀ ଜାତିର କଥା······" ତାଙ୍କ ଓଠ ଉପରେ ଫାଟି ପଡ଼ନ୍ତି ଖୋଲାଗଲାରେ ମିଷ୍ଟାଳାପ କରୁଥିବା ତଥାକଥିତ ହିତାକାଂକ୍ଷୀ ବନ୍ଧୁମାନେ ।

ଏଇ ଦୃଶ୍ୟ ମନେ ହେଲା ପରେ ମୁଁ ଆବିଷ୍କାର କଲି ମୁରଲୀବାବୁଙ୍କୁ—ପ୍ରକୃତରେ ସେତେ ଦମ୍ଭୀ ନୁହନ୍ତି ସେ । ନିଜ ଭିତରେ ମଣିଷ ସବୁବେଳେ ଖୋଜୁଛି ମୁକ୍ତି—ଟିକିଏ ଶାନ୍ତି—କୌଣସି ଗଛର ଛାଇ ଯେଉଁଠି ସେ ନିରୋଳାରେ ବସି ହାଲିଆ ମାରିପାରିବ । କିନ୍ତୁ ମିଳୁଛି କେଉଁଠି ? ଓଃ କି ମାରାତ୍ମକ ତା'ପରର ଦୀର୍ଘଶ୍ୱାସ । ସେଇଥିପାଇଁ ମଣିଷ ନିଜକୁ ଭୁଲାଇବା ପାଇଁ, ସମୟକୁ ଅତିକ୍ରମ କରିବା ପାଇଁ ଅନ୍ୟକୁ ସମାଲୋଚନା କରେ, ବିଦ୍ରୂପ କରେ, କାରଣ ସେ ଅନ୍ୟକୁ ଦୟା କରିପାରେ ନା । ଜୀବନକୁ ବାସ୍ନାର ଭେଳାର ଭଳି ଭୋଗି ଭୋଗି ହାଣିବାରେ କଣ କମ୍ ଯନ୍ତ୍ରଣା ? ସଂସାରର ସମସ୍ତ ଦୁଃଖୀମାନଙ୍କ ଭିତରେ ସେ ଜଣେ । ସେଇଥିପାଇଁ ସନ୍ଥ ତ୍ରିଭାଗର ଭିତରେ ସେ ସମ୍ପୂର୍ଣ୍ଣ ହଜିଗଲେ ଏବଂ ତାଙ୍କର ଘରଣୀଙ୍କ ଭୂତ ସନ୍ଥଙ୍କ ସ୍ତ୍ରୀ ଭିତରେ ଭଲ ଭାବରେ ଅନୁଭବ କଲେ । ବାସ !

ଏକତାରାର ସୁର ଚରମ ସରଳ ହେଲା । ହୃଦପୁର ଲୟ ସହିତ ତାରର ସଙ୍ଗୀତ ସୃଷ୍ଟି କଲା ଅପୂର୍ବ ମୂର୍ଚ୍ଛନା—ଟିଙ୍ଗ ଟିଙ୍ଗା ଟିଙ୍ଗ ଟିଙ୍ଗା ନିର୍ଜନ ରାତିର ସୁର ରାତିକୁ ସମ୍ମୋହିତ କଲା···ରାତିର କୋଳକର ଦୀନର ମାନବାତ୍ମ ମୂର୍ତ୍ତିକୁ ସାଦର ଅଭ୍ୟର୍ଥନା ଜଣାଇଲା । ତୁଳସୀ ଦାସ, ମୀରା, ସୁରଦାସ ହାମ୍ବୋଲଡ, ସାଲବେଗ ସବୁ ଭାସିଗଲେ ସ୍ୱରଗଙ୍ଗାରେ ପଡ଼ି ଗୋଟିଏ ଜ୍ୟୋତିର ସ୍ନିଗ୍ଧ ସ୍ପର୍ଶ ହୋଇ ଦେବ । ଅଗ୍ରତର ଫିଟିଗଲା ଏକ ନୂଆ ସଙ୍କଳର ସ୍ୱରୂପ । ଗୁଞ୍ଜରିଲା ତ୍ରିଭାଗ—ମୋହନ ମୁରଲୀ ବେଳରେ ଏକତାରାରେ ତାନ୍ ତୋଳି ଦେଲେ । କିନ୍ତୁ ହଠାତ୍ ମଣିଷ ଜନ୍ମକୁଣ୍ଡଳୀ ଆଖିରେ ଚଷମା ଲଗାଇ କହିଲା—"ତାବାରେ ଅଲିଅ ।"

ମୁରଲୀ ବାବୁଙ୍କର ଅନ୍ୱେଷଣ ଶେଷ ନ ଥିଲା । ଯାହା ପାଇଲେ ତାହା ଅପେକ୍ଷା ଖୋଜିଲେ ଅଧିକ । ବୁଭୁକ୍ଷାର ପାଟିଲ ଗଭୀର ବହୁଗଭୀର । ନିଜ ମୁକ୍ତି ସହିତ ସେ ଖୋଜିଲେ ପୀଡ଼ିତର ସ୍ୱାଧୀନତା । ନିଜ ଆହାରରୁ ସେ ଅନ୍ୟକୁ ଭାଗ ଦେଲେ । ସେ ରାସ୍ତା ସେତେ ସହଜ ନୁହେଁ । ଏଥିରେ କୃତକାର୍ଯ୍ୟତା ଅପେକ୍ଷା ଅବଶୋଷର ମାତ୍ରା ଅଧିକ । ଫଳରେ ସେ



Digitized by PPRACHIN, SOA

ଅନିଦ୍ରା ହେଉଲ, କାନ୍ଦିବାକୁ ଲାଗିଲେ—ଗୋପ ଗୋପ ଲୁହ ଗଡ଼ାଇ । ତେଣୁ ସେ ଲୁହ । ତଥାପି ପଛକୁ ହଟିଲେ ନାହିଁ । ସେ ଚଳାଇଲେ ମୁକ୍ତି ସଂଗ୍ରାମ । ତାଙ୍କର ଦୋକାନ ପରିଣତ ହେଲା ଆଶ୍ରମରେ । ହତଭାଗ୍ୟ ଯେତେକ ସମସ୍ତେ ଗୁହାରିଲେ ସେଠାକୁ ପହଁଚିବାର ମନ୍ତ୍ର ପାଇବା ପାଇଁ । ଅସ୍ପୃଶ୍ୟଙ୍କର ଫାଟି ପଡ଼ିଲେ ମୁରଘି ବାବୁ । ଏହାରି ଉପରେ ଅଙ୍ଗୁଳି ଗୁଳିଲ ଅଫୁରନ୍ତ ଜୋରରେ । ସ୍ୱର ଲଜ୍ଜାପୂର୍ଣ୍ଣ ଓ ଭାବମୟ ହେଲା ।

ତାଙ୍କ ମୁକ୍ତି ପର୍ବର ପ୍ରଥମ ଅବଲମ୍ବନ ହେଲା ଲକ୍ଷ୍ମୀ । ବୟସ ସତର ଅଠର । ଆଦିବାସୀ ବାଳିକାଟିଏ । ଘରେ ମା ଓ ଛୋଟ ଛୋଟ ଦୁଇଟି ସାନଭାଇ । ଦିନେ ଲକ୍ଷ୍ମୀର ମାଆ ହାତଯୋଡ଼ି ଜଣାଇଲା ମୁରଘି ବାବୁଙ୍କୁ, "ବାବୁ ତୁ ଆମର ବହୁତ ଉପକାର କରିଛୁ । ମହାଜନଠାରୁ ଆମ ଘରକୁ ମୁକୁଳାଇଛୁ । କିଏ ଆଉ ଏତେ କରିବ । ତେବେ ଲକ୍ଷ୍ମୀର କଥା ତୁ ବୁଝ । ତାକୁ ମୁଣ୍ଡ ଲଗାଇଦେ । କେଉଁଠି କାମ କରିବାର ସୁଯୋଗ ଦେ । ଚିନ୍ତା କଲେ ମୁରଘି ବାବୁ । ଅପେକ୍ଷା କରିବା ପାଇଁ ସମୟ ମାଗିଲେ । କିନ୍ତୁ ଲକ୍ଷ୍ମୀ ପାଇଁ ଶୀଘ୍ର ବନ୍ଦୋବସ୍ତ କର୍ ବୋଲି ଅଡ଼ି ବସିଲା ଲକ୍ଷ୍ମୀର ମା ।

ବାଧ୍ୟ ହୋଇ ସମ୍ମତି ପ୍ରଦାନ କଲେ ମୁରଘି ବାବୁ । ତାଙ୍କର ମନେ ପଡ଼ିଲେ ତାଙ୍କର ବୃଦ୍ଧ ପିତାମାତାଙ୍କ କଥା । ତାଙ୍କର ଦାୟିତ୍ୱକୁ ବହନ କରିବାକୁ ଭିତରର ନୈତିକତା ତାଙ୍କୁ ଆହ୍ୱାନ କଲା । ଆପାତତଃ ଲକ୍ଷ୍ମୀକୁ ତାଙ୍କ ଗାଁର ଘରେ ରଖିଦେଇ ପାରନ୍ତି ପାରେ—ଏହି ଚିନ୍ତାରେ ଲକ୍ଷ୍ମୀ ଓ ତା ମାଆର ଅନୁମତିକ୍ରମେ ଲକ୍ଷ୍ମୀ ଗଲା ମୁରଘି ବାବୁଙ୍କ ଗାଁକୁ ।

କିନ୍ତୁ ଲକ୍ଷ୍ମୀ ଅନ୍ତକନ୍ୟା ନୁହେଁ ତ ? କାରଣ ମୁରଘିବାବୁଙ୍କ ଜୀବନ କ୍ଷ୍ୟାତ୍ତିଯୁକ୍ତ ହୋଇ ଉଠିବ । ଯାହାର ବେଗ ଏତେ ପ୍ରଖର ହେଲା—ସତେକି ପୃଥିବୀର ସବୁ ଗନ୍ଧଗୁଡ଼ାକ ଏକାଠିରକେ ଜମୁଛି ପଡିବ । ଭାଙ୍ଗି ପଡ଼ିବ ସବୁ ଘରଦ୍ୱାର ଏବଂ ତା ସହିତ ଉଡ଼ିଯିବେ ମୁରଘିବାବୁ ଗୋଟିଏ ଶୁଖିଲା ପତ୍ର ପରି ଆକାଶରେ ଅସଂଖ୍ୟ ବୃତ୍ତ ସୃଷ୍ଟି କରି କରି ।

ଅବିଶ୍ରାନ୍ତ ବର୍ଷା ହେଲା ସମାଲୋଚନାର—ବଜ୍ରପାତ । "ବାବାଜୀଙ୍କୁ ଦେଖ ହୋ ଭଣ୍ଡାମିର ଶେଷ ସୀମା ଅଛି ତ !! ମସ୍ତଗିଲା ଲଗାଇଥିଲା ଶଳା" ଏମିତି କେତେ ପ୍ରକାରର ଭାଷା, ସନ୍ଦେହ, ଅଥବା, ଚୁଃଚୁଃ । ପୋଲିସ ଥାନାରେ ଏଜାହାର ଦିଆଗଲା "ଆଦିବାସୀ ଝିଅ ହରଣ ।" ପୁଣି ସାକ୍ଷୀ ହେଲା ଲକ୍ଷ୍ମୀର ମା ମଙ୍ଗଳା । ଧନ୍ୟରେ ପୃଥିବୀ ।

ଏ ସମସ୍ତ ଘଟଣା ଘଟିଲା ମୁରଘିବାବୁଙ୍କର ଲକ୍ଷ୍ମୀକୁ ନେଇ ସହର ଛାଡ଼ିବାର ଦୁଇଘଣ୍ଟା ମଧ୍ୟରେ । ଏ ଜଗତରେ ଚଳନ୍ତି ସମ୍ବାଦର ଗତି ଖୁବ୍ ବଢ଼ିଯାଇଛି ।

ଖବର ପାଇଲେ ମୁରଘିବାବୁ ଗାଁରେ ଟେଲିଗ୍ରାମ ପାଇ ଜଣେ ବନ୍ଧୁଙ୍କଠାରୁ । ଫେରି ଆସିଲା ଲକ୍ଷ୍ମୀ—ଲକ୍ଷ୍ମୀ ଆସିଲା ସିନା କିନ୍ତୁ ତା ପରର ବିଭତ୍ସତା ସୀମା ଲଂଘନ କରିଗଲା । ଲକ୍ଷ୍ମୀ ମାଡ ଖାଇଲା କୃତଜ୍ଞ ଭାବରେ । କିନ୍ତୁ ଲକ୍ଷ୍ମୀର ସତ୍ୟବାଦିତା ଦେଖି ମୁଁ ମୁଗ୍ଧ ହେଲି । ମାଡ ଖାଇଲା ସିନା କିନ୍ତୁ ସତ କହିବା ଛାଡ଼ିଲା ନାହିଁ । ସେ କହିଲା "ଏଇ ମା ମତେ ମାରୁଛି ସିନା କିନ୍ତୁ ସିଏ ତ ମୋତେ ବାବୁ ସହିତ ଯିବା ପାଇଁ ଜିଦ କରିଥିଲା—କଷ୍ଟରେ ବସାଇଦେଇ ଯାଇଥିଲା ।"

ଭାଙ୍ଗି ପଡ଼ିଲେ ମୁରଘିବାବୁ । ତାଙ୍କ ଭିତରର ମଣିଷ ବାରମ୍ବାର ପଚାରୁଥିଲା—"ମଙ୍ଗଳା ତୁ ଏମିତି ହେଲୁ କାହିଁକି ? କିଏ ତୋତେ ଏମିତି କଲା—ଲକ୍ଷ୍ମୀ ମୋର ଝିଅ ଭଳି······କିନ୍ତୁ ପ୍ରକାଶ ସେ କରିପାରୁ ନ ଥିଲେ—ସହରର ଫୁଲିଲା ଫୁଲିଲା ଆଖିଗୁଡ଼ାକ ଯେମିତି ତାଙ୍କୁ ଗିଳିବା ଭଙ୍ଗୀରେ ଗୁହାରି ରହିଥିଲେ ।

କୋର୍ଟକୁ କେଉଁଠି ନିର୍ଦ୍ଧାରିତ ସ୍ଥାନରେ ଚାଲିଗଲା । ସାମୟିକଭାବେ । ଲକ୍ଷ୍ମୀ ପାଇଁ ରକ୍ଷା ପାଇଗଲେ ମୁରଲୀ ମୋହନ ।

ଏହା ଭିତରେ ବହୁ ବନ୍ଧୁ ଆସିଛନ୍ତି ତାଙ୍କ ସହିତ ବାକ୍ୟାଳାପ କରିବା ପାଇଁ । କିନ୍ତୁ ତାଙ୍କ ଭିତରେ ଗୋଟିଏ ଗୋଟିଏ ଶଙ୍କାର ଦୃଷ୍ଟିଭଙ୍ଗୀ ବେଶ୍ ଅନୁଭବ କରି ହେଉଥିଲା । ଅମୃ ଅଜ ଭୂମିକାପର ପରିଣତ ହୋଇଛି ।

ଶେଷରେ ଆସିଛି ମହାପରୀକ୍ଷାର ଦିନ । ବିଚାର ସରିସାଇଛି । ମୁରଲୀ ମୋହନଙ୍କୁ ରକ୍ଷାକରି ପାରି ନାହିଁ — ସମୟ, ତାଙ୍କର ସତ୍ୟବାଦୀ ଗୁଣ କିମ୍ବା ଅସୀମ ଆତ୍ମତ୍ୟାଗ । ଶେଷରେ ସେ ଦୋଷୀ ସାବ୍ୟସ୍ତ ହୋଇଛନ୍ତି । ମଙ୍ଗୁଳି ଏହା ପୂର୍ବରୁ ଆସିଛି ବହୁଥର ସାକ୍ଷାତ କରିବା ପାଇଁ । କିନ୍ତୁ ମୁରଲୀ ମୋହନ ମଙ୍ଗୁଳିକୁ ଥରେ ଆଖିରେ ସୁଦ୍ଧା ଚାହିଁ ନାହାନ୍ତି ।

ସନ୍ଧ୍ୟାର ଏକ ନିର୍ଜନ ବେଳା । ମଙ୍ଗୁଳି ଆସିଛି କିଛି କହିବ ବୋଲି । ମୁରଲୀ ମୋହନ ଛୁଟାଇଛନ୍ତି ଏକ ଦୂର ଏକତାରାରେ । ଅଙ୍ଗୁଳିରେ ଗତି ଆଜି ବାଧା ମାନୁନି । ତାର ଇଚ୍ଛା ତାରର ବକ୍ଷକୁ ଯେମିତି ବିଦାରି ଛିନ୍ନଭିନ୍ନ କରିଦେବ । କଣ୍ଠରୁ ଛୁଟିଛି ସଙ୍ଗୀତର ଧାରା - ଦୁଃଖ ଅନୁଶୋଚନାର ମୂର୍ଚ୍ଛନା — ଯେମିତି ଏକ ନିଷ୍କୁଳ ଆବରଣରେ । ସତେବା ଆଜି ଅନ୍ୱେଷଣର ପରୀକ୍ଷା ଚାଲିଛି ଅବିଶ୍ରାନ୍ତ ଭାବରେ ।

ମଙ୍ଗୁଳି ଆଖିରେ ଲୁହ । ସେ କହୁଛି ବାବୁ ତୋର କିଛି ଦୋଷନାହିଁ । ତୁ ଜାଣୁନାହିଁ ମୁଁ କାର୍ତ୍ତିକ ଲକ୍ଷ୍ମୀକୁ ତୋ ସହିତ ପଠାଇଲି । ମୋ ବସ୍ତିର ମାରୁଆଡ଼ିବାବୁ କେତେଥର ଲକ୍ଷ୍ମୀକୁ ଚାହିଁଛି । ତା ହାବଭାବ ଦେଖି ଲକ୍ଷ୍ମୀ ଡରରେ କାନ୍ଦପକାଇଛି । ସେଠିବାବୁ କହୁଥିଲା ଲକ୍ଷ୍ମୀକୁ କଲିକତା ନେଇଯିବ ବୋଲି । ଲକ୍ଷ୍ମୀ ଗଲେ ଭଲ ପଇସା ମିଳିବ ବୋଲି ମତେ ଲୋଭ ଆଶା ଦେଖାଇ ଥିଲା । ମୋ ମନରେ କାର୍ତ୍ତିକ ପାପ ଛୁଇଁଲା । ସେଥିପାଇଁ ମୁଁ ତୋ ସାଙ୍ଗରେ ନିଜେ ପଠାଇଥିଲି । ତୋର କିଛି ଦୋଷ ନାହିଁବାବୁ, ତୋର କିଛି ଦୋଷ ନାହିଁ । ତୁ ଗଲାପରେ ସେ ମୋତେ ମଦ ପିଆଇ ଦେଲା କହିଲା— "ଥାନାରେ ତୋ ନାଁରେ ଏତେଲା ଦେବାକୁ । ତା ପାଇଁ ଟଙ୍କା ଦେଲା । ମୁଁ ଏତେ କାଣ୍ଡକଲି-ବାବୁ ! କହୁ କହୁ ମଙ୍ଗୁଳି କାନ୍ଦି କାନ୍ଦି ଲୋଟି ଯାଉଥିଲା ମୁରଲୀବାବୁଙ୍କ ପାଦ ତଳେ ।

କିନ୍ତୁ ମୁରଲୀ ଥିଲେ ନିର୍ବାକ୍— ତାଙ୍କ ଆଖିରୁ ଝରିପଡୁଥିଲା ଧାର ଧାର ଲୁହ । ଏକତାରା ସୁର ତୋଳୁଥିଲା ଟିଙ୍ଗା — ଟିଙ୍ଗ୍ ଟିଙ୍ଗ୍ —ଟିଙ୍ଗା ଟିଙ୍ଗ୍ ଟିଙ୍ଗ୍ । ଟିଙ୍ଗା ଟିଙ୍ଗ୍ — ଟିଙ୍ଗ୍ — ସତେ କି ସେ ତାର ଝଙ୍କାର କହୁଥିଲା "ସତ୍ୟ ମେବ ଜୟତେ—ସତ୍ୟ ମେବ ଜୟତେ । ଏହି ପବିତ୍ର ଲୁହ ସମୁଦ୍ରରେ ମୁଁ ଭାସୁଛି ନା ବୁଡ଼ୁଛି ଠିକଣା କରିପାରୁ ନ ଥିଲି ।

ମୁଁ ଠିଆ ହୋଇଥିଲି ମୁରଲୀବାବୁଙ୍କ ଦୋକାନର ଭଙ୍ଗାଝୁଣ୍ଟିକୁ ଆଉଜି । ମଙ୍ଗୁଳି କଥା ଶୁଣିସାରିଲା ପରେ ମୋ ପାଟିରୁ ଅଜାଣତରେ ବାହାରି ପଡ଼ିଲା — ମଙ୍ଗୁଳି — ଢେର ହୋଇଗଲା — ଖୁବ୍ ଢେର ହୋଇଗଲା ।

ଅଧ୍ୟାପକ ରମେଶଚନ୍ଦ୍ର ଦାସ
ଡି. ଏ. ଭି. କଲେଜ

---

"ସ୍ମରଣିକା"ର ସମ୍ପାଦକମଣ୍ଡଳୀଙ୍କୁ ସେମାନଙ୍କର ବହୁମୂଲ୍ୟ ଅବଦାନ ପାଇଁ ଏବଂ ଯେ. ଇ. ଏଲ୍. ପି. ପ୍ରେସ୍‌ର କର୍ମକର୍ତ୍ତାମାନଙ୍କୁ ସେମାନଙ୍କର ଅପୂର୍ବ ସହଯୋଗ ପାଇଁ କୃତଜ୍ଞତା ଜ୍ଞାପନ କରୁଛୁ ।

ସମ୍ପାଦକ
ଉତ୍କଳ ସାଂସ୍କୃତିକ ପରିଷଦ

Digitized by PPRACHIN, SOA

ପୁଣ୍ୟାତ୍ମା, ଉତ୍କଳମଣି, ପଣ୍ଡିତ
ଗୋପବନ୍ଧୁ ଦାସଙ୍କ ଜନ୍ମ
ଶତବାର୍ଷିକୀ ଉପଲକ୍ଷେ
ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଅଛୁ




ହିନ୍ଦୁସ୍ଥାନ ଏରୋନଟିକ୍ସ୍ ଲିମିଟେଡ୍,
କୋରାପୁଟ ଡିଭିଜନ, ସୁନାବେଡ଼ା ।

Digitized by PPRACHIN, SOA

*With best compliments from:*

# HINDUSTAN AERONAUTICS EMPLOYEES CO-OPERATIVE CREDIT SOCIETY LTD.

**SUNABEDA-763002**




**To Serve You better,**

**"A Fixed Deposit Scheme with high rate of interest" is going to be introduced very shortly with a moderate thrift system.**

"EACH FOR ALL AND ALL FOR EACH"

---

Printed at the J. E. L. Church Press, Koraput.

Digitized by PPRACHIN, SOA